

# ଅହଲ୍ୟା

ଶ୍ରୀମତୀ ପ୍ରମିଳା ପତି

# ଅହଲ୍ୟା

ଗଳ୍ପଗୁଚ୍ଛର ଲେଖିକା :
ଶ୍ରୀମତୀ ପ୍ରମିଳା ପତି
ଶିକ୍ଷୟିତ୍ରୀ, ସରକାରୀ ପ୍ରେସ୍ କଲୋନି
ଉ.ପ୍ରା. ବିଦ୍ୟାଳୟ
ମଧୁପାଟଣା, କଟକ-୧୦
ଦୂରଭାଷ- ୯୭୭୭୧୮୦୯୪୯

ପ୍ରଥମ ପ୍ରକାଶ :
୧୪ ଜାନୁଆରୀ, ୨୦୧୧
(ମକର ସଂକ୍ରାନ୍ତି)

ପ୍ରକାଶକ :
ଶ୍ରୀ ରବି ମିଶ୍ର
କାଠଯୋଡ଼ି ରୋଡ୍, ମଧୁପାଟଣା,
କଟକ-୧୦

ମୁଦ୍ରଣ :
ସଂସାର ପ୍ରେସ
ତଳତେଲେଙ୍ଗାବଜାର, କଟକ-୯

ପ୍ରଚ୍ଛଦ- ପ୍ରଭାକର

ମୂଲ୍ୟ : ଷାଠିଏ ଟଙ୍କା ମାତ୍ର

**AHALYA**

*Short stories by :*
Srimati Pramila Pati, Teacher,
Govt. Press Colony U.P. School
Madhupatna, Cuttack-753010
Phone- 9777180949

*First Publication :*
14 January, 2011
(Makara Sankranti)

*Published by :*
Sri Rabi Mishra
Kathajodi Road,
Madhupatna ,
Cuttack-753010

*Printed by :*
Sansar Press
Talatelenga Bazar,
Cuttack-753009

*Cover by :*
Pravakar

Price : Rupees Sixty only

# ଉତ୍ସର୍ଗ

ତିନୋଟି ରତ୍ନସଦୃଶ ମୋ ତିନିଝିଅ । ଝିଅ ବୋଲି ମୁଁ କେବେ ସେମାନଙ୍କୁ ଅବହେଳା କରିନି କି ସେମାନଙ୍କର କୌଣସି ଅଭାବ ରଖିନି । ମୋ ଜୀବନରେ ଆଶା କରି ଯାହା ନ ପାଇଛି, ମୋ ଝିଅମାନଙ୍କ ଜୀବନରେ ସେପରି ଅଭାବବୋଧ ଯେମିତି ନ ଘଟୁ, ସେଥିପାଇଁ ମୁଁ ସବୁବେଳେ ସଚେତନ ରହିଛି । ନାରୀ ଜୀବନର ଘାତ-ପ୍ରତିଘାତ, ଦୁଃଖ-ସୁଖ ସବୁକିଛିକୁ ସାମ୍ନା କରି ସେମାନେ ଜୀବନଯୁଦ୍ଧରେ ଜୟଲାଭ କରନ୍ତୁ । ଡରି ନ ଯାଇ ସମାଜର ପ୍ରତ୍ୟେକ କ୍ଷେତ୍ରରେ ନିଜକୁ ପ୍ରତିଷ୍ଠିତ କରନ୍ତୁ – ଏହା ମୋର ଏକାନ୍ତ କାମନା ।

ମୋ ମାନସକନ୍ୟା 'ଅହଲ୍ୟା'ର ମନକଥା ପଢ଼ି ସେମାନେ ଏ ଦୁନିଆଁକୁ ଚିହ୍ନନ୍ତୁ, ଜାଣନ୍ତୁ ଏବଂ ଜୀବନର ସବୁ ଝଡ଼ଝଞ୍ଜାକୁ ଅତିକ୍ରମ କରିଯିବାର ଶକ୍ତି ଓ ସାହସ ସଞ୍ଚୟ କରନ୍ତୁ – ଏହି ଆଶା ରଖି ମୋ' ତିନିଝିଅ 'ବୁବୁଲି , ପୁତୁଲି ଓ ଟିଟା'କୁ ଉତ୍ସର୍ଗ କରୁଛି ଅହଲ୍ୟାକୁ ।

ତୁମର 'ବୋଉ'



# ଅଭିମତ

ବିଶିଷ୍ଟ ଗାଳ୍ପିକା ଏବଂ କବୟିତ୍ରୀ ଶ୍ରୀମତୀ ପ୍ରମିଳା ପତିଙ୍କ ଦ୍ୱାରା ଲିଖିତ ଗଳ୍ପପୁସ୍ତକ 'ଅହଲ୍ୟା'ର ପାଣ୍ଡୁଲିପି ଦେଖିବାର ସୁଯୋଗ ପାଇଲି । ଗଳ୍ପଗୁଡ଼ିକ ଅତି ଉଚ୍ଚକୋଟୀର ଓ ଶିକ୍ଷଣୀୟ ହୋଇଅଛି । ସାମ୍ପ୍ରତିକ ସମାଜରେ ଏଭଳି ଲେଖାଗୁଡ଼ିକ ନିଶ୍ଚିତ ପ୍ରଭାବ ପକାଇବ ବୋଲି ମୋର ଦୃଢ଼ ବିଶ୍ୱାସ ।

ଡାକ୍ତର ଦୀନବନ୍ଧୁ ମହାରଣା
*ବି.ଏ.ଏସ୍., ଏମ୍.ଡି, ଏଲ୍.ଏଲ୍.ବି (ଉତ୍କଳ)*
*ଅଧ୍ୟକ୍ଷ, ଓଡ଼ିଶା ଆୟୁର୍ବେଦ ସେବାସଂସ୍ଥା*



# ଅଭିମତ

ଗାଳ୍ପିକା ପ୍ରମିଳା ପତି ଜଣେ ପ୍ରତିଷ୍ଠିତ ଲେଖିକା । ତାଙ୍କ ଗଳ୍ପରେ ସମାଜର ବେଦନା ସ୍ପଷ୍ଟ ଭାବେ ପରିପ୍ରକାଶ ଲାଭ କରି-ପାରିଛି । ଜନ-ଜୀବନର ସୁଖ, ଦୁଃଖ, ବ୍ୟଥା ଓ ସଂବେଦନାକୁ ପାଥେୟ କରି ତାଙ୍କର ନମନୀୟ ଦୃଷ୍ଟିରେ ସେ ଲୋକଚରିତ୍ରକୁ ବେଶ୍ ଅବଲୋକନ କରିପାରିଛନ୍ତି । ସେଥିରୁ ସୃଷ୍ଟି ଏହି 'ଅହଲ୍ୟା' ଗଳ୍ପ ସଂକଳନ ।

ଦିନେ ସମାଜ ଦୃଷ୍ଟିରେ ସମାଲୋଚିତା ଅହଲ୍ୟା ଶ୍ରୀରାମଙ୍କ ପଦସ୍ପର୍ଶରେ ସମାଜରେ ସ୍ୱୀକୃତି ପାଇଥିଲା । ତାହା ହିଁ ଥିଲା ତାଙ୍କର ପୁନଃଜୀବନ ପ୍ରାପ୍ତି । ଆଜିର 'ଅହଲ୍ୟା' ଶ୍ରୀମତୀ ପ୍ରମିଳା ପତିଙ୍କ କଲମମୂନର ସ୍ପର୍ଶ ପାଇ ସମାଜ ଆଗରେ ଠିଆହୋଇଛି ।

ସେଥିପାଇଁ ତାଙ୍କର ଭବିଷ୍ୟତ କୁସୁମିତ ହେଉ-- ମୁଁ ଏହା ହିଁ କାମନା କରୁଛି ।

ଡକ୍ଟର ତ୍ରିନାଥ ପଟ୍ଟନାୟକ
*ସମ୍ପାଦକ, ପୁରାଣ ପତ୍ରିକା*
*ନିଆଳି-୭୫୪୦୦୪, ଜି-କଟକ*

# ପଦିଏ କଥା

ନିଜକଥା ନିଜେ କହିବାଟାକୁ କେହି ପସନ୍ଦ ନ କଲେ ମଧ୍ୟ ବେଳେ ବେଳେ ନିଜକୁ ପରିଚିତ କରାଇବା ପାଇଁ ନିଜକଥା ନିଜକୁ କହିବାକୁ ହୁଏ । ଲେଖିବା ମୋର ଗୋଟିଏ ନିଶା । ଅଷ୍ଟମ ଶ୍ରେଣୀରେ ପଢ଼ିଲାବେଳେ ମୁଁ ଏହି ନିଶା ଜାଲରେ ଛନ୍ଦି ହୋଇ ଯାଇଥିଲି । ମୋର ଏବେ ବି ମନେଅଛି ସେଦିନର ଘଟଣା । ମୋ ଲେଖିକା ଜୀବନର ପ୍ରଥମ ଦିନର କଥା । ମୋର ଅତି ପ୍ରିୟ **ଶିକ୍ଷୟିତ୍ରୀ ଥିଲେ** ପରମପୂଜ୍ୟା ଆଶାଲତା ମିଶ୍ର । ସିଏ ବି ମତେ ବହୁତ ସ୍ନେହ କରୁଥିଲେ । ଦିନେ ଇଂରାଜୀ କବିତା ଘୋଷା ନ ଦେବାରୁ ଦିଦି ମତେ ବେଞ୍ଚ ଉପରେ ଠିଆ କରେଇଦେଲେ । ସେଦିନ ଖୁବ୍ କାନ୍ଦିଲି ଓ ଦୁଃଖରେ ଲେଖିପକାଇଲି କବିତାଟିଏ – "ମୃତ୍ୟୁ ତୁମେ କେତେ ଦୂରରେ......" ସାଙ୍ଗମାନେ ଦିଦିଙ୍କୁ କବିତାଟି ଦେଖାଇବା ପରେ ସେ ମତେ ତାଙ୍କ ପ୍ରକୋଷ୍ଠକୁ ଡାକି ମୋ ଲେଖାର ଖୁବ୍ ପ୍ରଶଂସା କଲେ ଓ ନୈରାଶ୍ୟବାଦୀ କବିତା ନ ଲେଖି ଜୀବନଧର୍ମୀ ଲେଖା ଲେଖିବାକୁ କହିଥିଲେ । ଆଜି ଦିଦି କେଉଁଠି ଅଛନ୍ତି ଜାଣେନା; ତଥାପି ତାଙ୍କର ସେଇ କଥାପଦକ ମତେ ଆଗକୁ ବଢ଼ି ଚାଲିବାକୁ ପ୍ରେରଣା ଦେଇଛି । ବାହାଘର ପରେ ସ୍ୱାମୀ ରବି ମିଶ୍ର ମତେ ନାଟକ ଲେଖିବାକୁ ପ୍ରବର୍ତ୍ତାଇଲେ, କାରଣ ସେ ଜଣେ ଅଭିନେତା । ତାଙ୍କ ପ୍ରେରଣାରେ ଅନେକ ନାଟକ, ଗୀତିକଥା, ସଂଗୀତରୂପକ ଲେଖିଛି । ସେଗୁଡ଼ିକ ଆକାଶବାଣୀ କଟକ କେନ୍ଦ୍ରରୁ ପ୍ରଚାରିତ ହୋଇ ପ୍ରଶଂସିତ ହୋଇଛି ।

ମୋର ତୃତୀୟ ଝିଅର ଜନ୍ମ ପୂର୍ବରୁ ସ୍ୱରଚିତ 'ମାଟି କଣ୍ଢେଇ' ନାଟକଟି ରେଡିଓରେ ପ୍ରଚାରିତ ହୋଇସାରିଥାଏ । ଝିଅ ହେବା ପରେ ମୋ ବାପା ସ୍ୱର୍ଗତଃ ସଚ୍ଚିଦାନନ୍ଦ ପତି ମତେ କହିଥିଲେ, "ଝିଅ ହେଲା ବୋଲି ମନଦୁଃଖ କରୁଛୁ କି ? ତୁ ପରା 'ମାଟି କଣ୍ଢେଇ' ନାଟକରେ ଝିଅମାନେ ପୁଅଙ୍କଠାରୁ କୋଉ ଗୁଣରେ କମ୍ ନୁହନ୍ତି ବୋଲି ଲେଖିଛୁ ! ସତରେ ଝିଅମାନେ ଖୁବ୍ ଭଲ ।" ବାପାଙ୍କର ଏଇକଥା ମତେ ଲେଖିବାକୁ ଅଧିକ ପ୍ରେରଣା ଯୋଗାଇଛି । ମୋର କ୍ଷୁଦ୍ର ଗଳ୍ପଗୁଡ଼ିକ ମଧ୍ୟରେ ନାରୀକୈନ୍ଦ୍ରିକ ରଚନା ଟିକେ ଅଧିକ । ନିଜ ଅନୁଭୂତି, ସାଙ୍ଗସାଥୀ, ପରିବେଶ, ପତ୍ରପତ୍ରିକା ଖବରକାଗଜ ଇତ୍ୟାଦିରୁ ଏଥିପାଇଁ ମୁଁ ଅନେକ ଖୋରାକ୍ ପାଇଛି ।

ଏପରିକି ବିଦ୍ୟାଳୟରେ ଛାତ୍ରଛାତ୍ରୀମାନଙ୍କ ସହିତ ଅନ୍ତରଙ୍ଗ ଆଳାପ ବେଳେ ସେମାନଙ୍କ ପାରିବାରିକ ଜୀବନର କେତେକ ଘଟଣାବଳୀ ମୋ ମନକୁ ଛୁଇଁଯାଇଛି । ନାରୀ ଯେତେ ଆଧୁନିକା, ଉଚ୍ଚଶିକ୍ଷିତା, ଉପାର୍ଜନକ୍ଷମା ହେଲେ ମଧ୍ୟ ଓ ଯେତେ ସ୍ୱାଧୀନତା ପାଇଲେ ମଧ୍ୟ କେଉଁଠି ନା କେଉଁଠି ଆମ ସମାଜରେ ନାରୀଟିଏ ତା' ପରିବାର ଦ୍ୱାରା, ପ୍ରିୟ ପରିଜନ ଦ୍ୱାରା ବା ସମାଜ ଦ୍ୱାରା ଶାରୀରିକ ଓ ମାନସିକ ସ୍ତରରେ ନିର୍ଯ୍ୟାତିତା ହେଉଛି । ଏହି ନିର୍ଯ୍ୟାତନାର ଶିକାର ହୋଇ କିଏ ଅବାଟରେ ଯାଉଛି ତ କିଏ ମୃତ୍ୟୁକୁ ଆଦରି ନେଉଛି । ନାରୀର ମାନସିକତା, ଇଚ୍ଛା, ଅନିଚ୍ଛା ଓ ସୃଜନଶୀଳତାକୁ ଆପଣେଇ ନେଇ ସମ୍ମାନ ଦେବା ଭଳି ମାନସିକତା ଏବେ ବି ଆମ ସମାଜରେ ଦେଖାଯାଏନି; ଅଥଚ ନାରୀ ହେଉଛି ପରିବାରର କେନ୍ଦ୍ରବିନ୍ଦୁ ଓ ସମାଜର ସବୁଠାରୁ ଶକ୍ତିଶାଳୀ ବ୍ୟକ୍ତିତ୍ୱଟିଏ । କାରଣ ସହିଷ୍ଣୁତା, ଧୈର୍ଯ୍ୟ ଓ କ୍ଷମା ହେଉଛି ନାରୀର ସହଜାତ ଗୁଣ, ଯାହାକି ପୁରୁଷଠାରେ ଦେଖାଯାଏନି । ସୁସ୍ଥ, ସୁନ୍ଦର ପରିବାର ଓ ସମାଜ ଗଠନର ନାରୀର ଭୂମିକା ଗୁରୁତ୍ୱପୂର୍ଣ୍ଣ ।

ମୋର କ୍ଷୁଦ୍ର ଗଳ୍ପ ସଂକଳନ 'ଅହଲ୍ୟା'ର ଅନ୍ତଃସ୍ୱର ହେଉଛି ସେଇ ନାରୀମାନଙ୍କର, ଯେଉଁମାନେ ନିର୍ଯ୍ୟାତିତା ହୋଇ ଅହରହ ମାନସିକ ସନ୍ତୁଳନ ଭୋଗି ମଧ୍ୟ ନୀରବରେ ସବୁ ସହିଯାଉଛନ୍ତି । ଆଧୁନିକତା ନାମରେ ନାରୀର ନଗ୍ନତା ଓ ସ୍ୱେଚ୍ଛାଚାରିତା ଯେପରି ସ୍ପୃହଣୀୟ ନୁହେଁ, ସେହିପରି ଅବଳା, ଦୁର୍ବଳା ମନେକରି ନାରୀକୁ ଶାରୀରିକ ଓ ମାନସିକ ସ୍ତରରେ ଅତ୍ୟାଚାର କରିବା ଏକ ଅମାନବିକତା ଓ ଅପରାଧ । ଏହିକଥା ଆପଣମାନଙ୍କ ନିକଟରେ 'ଅହଲ୍ୟା' ମାଧ୍ୟମରେ ପହଞ୍ଚେଇବାର ସାମାନ୍ୟ ପ୍ରୟାସ କରିଛି ମାତ୍ର । ଆପଣମାନେ ମୋ 'ଅହଲ୍ୟା'କୁ ଆପଣେଇ ନେଇ, ତା' ହୃଦୟର ଭାଷା ପଢ଼ି ତାକୁ ଉଚିତ ନ୍ୟାୟ ଦେବେ ବୋଲି ଆଶା, ବିଶ୍ୱାସ ଓ ଭରସା ରଖିଛି । ଆଜିଠୁ 'ଅହଲ୍ୟା' କେବଳ ମୋ ମାନସକନ୍ୟା ନୁହେଁ, ସେ ଆପଣମାନଙ୍କ ପରିବାରର ଅତି ଗେହ୍ଲା ଝିଅ ହୋଇ ଯଶଖ୍ୟାତିର ଅଧିକାରିଣୀ ହେଉ, ଏହା ହିଁ ଠାକୁରଙ୍କ ନିକଟରେ ମୋର ପ୍ରାର୍ଥନା ।

ମୋର ଏହି ସଂକଳନଟିର ପ୍ରକାଶନରେ ମୋର ଶିକ୍ଷକବନ୍ଧୁ ଶ୍ରୀଯୁକ୍ତ ଲକ୍ଷ୍ମଣ ମଲ୍ଲିକ ମତେ ଅକୁଣ୍ଠ ସାହାଯ୍ୟ ଓ ସହଯୋଗ କରିଥିବାରୁ ମୁଁ ତାଙ୍କ ନିକଟରେ ଚିରଋଣୀ ।

-- ପ୍ରମିଳା ପତି

# କେଉଁ ଗଳ୍ପ କେଉଁଠି .....





# ବାଟଅବାଟ

ପୁରୀର ବିସ୍ତୃତ ବେଳାଭୂମିରେ ମୁଁ ଏକାକୀ ପଦଚାରଣ କରୁଥିଲି । ଢେଉର ଉତ୍ତାଳ ନୃତ୍ୟ, ଦର୍ଶକଙ୍କର ଭାବବିହ୍ୱଳ ଦୃଷ୍ଟି, ଅସ୍ତଗାମୀ ସୂର୍ଯ୍ୟର ନରମ ନରମ ଲାଲ୍‌କିରଣ ଅବେଲୋକନ କରି ମୁଁ ଆତ୍ମବିସ୍ମୃତ ହୋଇଯାଇଥିଲି । ମୋ ଚଉହଦିର ପୃଥିବୀ ଓ ତା'ର କୋଳାହଳ ମତେ କିଛି ବି ସ୍ପର୍ଶ କରୁ ନ ଥିଲା । ହଠାତ୍ କେହିଜଣେ ମତେ ପଛପଟୁ ନିବିଡ଼ଭାବେ ଜଡ଼ାଇ ଧରିବାରୁ ମୋର ଧ୍ୟାନଭଗ୍ନ ହେଲା । ମୁଁ ଆଶ୍ଚର୍ଯ୍ୟ ହେଲି । କିଏ ଏହି ଅତ୍ୟାଧୁନିକା ! ସ୍ୱର୍ଗର ଅପସରୀ ଅବା ସମୁଦ୍ରର ଜଳପରୀ ନୁହେଁ ତ ? ମୋର ସ୍ମୃତି-ବିସ୍ମୃତିର କେଉଁ ଇଲାକାରେ ୟାଂଙ୍କର ପରିଚୟ ଥିଲାଭଳି ଲାଗୁନି ତ ! ମୋର ସନ୍ଦେହୀ ଚାହାଣୀ ଓ ବୋକା ବୋକା ଭାବ ଦେଖି ତରୁଣୀଜଣକ ମନଖୋଲା ହସ ହସୁଥିଲେ । ସେ ହସରେ ଥିଲା ଭରପୂର ଆନ୍ତରିକତା ।

"Sorry .... ଆପଣ..... !" ମୁଁ ପଚାରିଲି ।

"ତୁ ମତେ ଚିହ୍ନିପାରୁନୁ ଝୁନୁ ? ମୁଁ ବନି .... ତୋର ଅତିପ୍ରିୟ ବନାନୀ ।" ଏତିକି କହି ଆଖିରୁ ଗଗ୍‌ଲସ୍ ବାହାର କରି ଦେଲେ ମହିଳାଜଣକ । ମୁହଁରେ ଥିଲା ପ୍ରଗଲ୍‌ଭ ହସ । ସତେ ଯେମିତି ମୁଁ ଆକାଶରୁ ଖସିପଡ଼ିଲି ! ଅପ୍ରସ୍ତୁତ ଭାବେ ପାଟିରୁ ବାହାରିପଡ଼ିଲା, "ଆପଣ ! ମାନେ ବନି ତୁ !" ମୁଁ ଦେଖିଲି ମୋର ଏ ପଦିଏ କଥାରେ ବନାନୀ ଆଖିରେ ଖୁସିର ବିଜୁଳି ଦପ୍ ଦପ୍ ଜଳିଉଠିଲା । ଆତ୍ମହରା ହେଇ ସେ କହିଲା, "ଆଃ ! ଆଉଥରେ ଡାକ୍ ବନି ବୋଲି ! ଏଇ ସ୍ନେହବୋଳା ଡାକ ଟିକେ ଶୁଣିବା ପାଇଁ ମୁଁ ଦୀର୍ଘ ଦଶବର୍ଷ ହେବ ଡଳଳବିକଳ ହେଉଛି । ଏତେ ଆତ୍ମୀୟତା, ଏତେ ପ୍ରାଣପ୍ରାଚୁର୍ଯ୍ୟଭରା ଡାକଠାରୁ ମୁଁ କେତେ ଦୂରେଇଯାଇଛି ସତେ !" ଦୁଃଖର ମେଞ୍ଚାଏ କୁହୁଡ଼ି ରୁଦ୍ଧ କରିଦେଲା ବନାନୀର କଣ୍ଠକୁ ।

ମୁଁ କିନ୍ତୁ ହଠାତ୍ ନୀରବ ହେଇଗଲି । ହଠାତ୍ ଯେମିତି ଏକ ସଂକ୍ରାମକ ବ୍ୟାଧିର ଭୟ ମତେ ବନାନୀଠାରୁ ଦୂରେଇ ଦେଉଥିଲା । ଦୀର୍ଘ ଦଶବର୍ଷ ହେବ ବନାନୀ ସହିତ ମୋର ଆଦୌ ସାକ୍ଷାତ୍ ହେଇନି । ହାଇସ୍କୁଲରୁ ଆରମ୍ଭ କରି କଲେଜରେ ଶେଷବର୍ଷ ଯାଏ ଆମେ ଦୁହେଁ ଥିଲୁ ଘନିଷ୍ଠ ବାନ୍ଧବୀ । ଆମର ସଂପର୍କ ଅତି ନିବିଡ଼ ଥିଲା । ସେଥିପାଇଁ ଘରେ, ବାହାରେ ସମସ୍ତେ ଆମକୁ ଥଟ୍ଟାରେ କହୁଥିଲେ, "ହାଏ, ହାଏ, କେଦାରଗୌରୀ, ଲୈଲା-ମଜନୁ ବି ଏମିତି ପ୍ରେମ କରି ନ ଥିବେ ମ !" ବନାନୀ ଥିଲା ଭାରି ଲାଜକୁଳୀ; କିନ୍ତୁ ଅତିମାତ୍ରାରେ ସୁନ୍ଦରୀ । ସିଏ ଥିଲା ଆମ 'କଲେଜ୍ କୁଇନ୍' । ବନାନୀ ଅବିନାଶକୁ ଭଲପାଉଥିଲା । ଅବିନାଶ ସେତେବେଳେ ଇଂଜିନିୟରିଂ ପଢୁଥିଲେ । କଲେଜ୍ ଛାଡ଼ିବା ପରେ ବନାନୀ ଓ ଅବିନାଶର ବିବାହ ହୋଇଗଲା । ଅବିନାଶ ବନାନୀକୁ ବିନା ଯୌତୁକରେ ବିବାହ କଲେ । ବନାନୀଠାରୁ ମୁଁ ଶୁଣିଛି ସେମାନଙ୍କ ରୋମାନ୍ସର କାହାଣୀ । ମୁଁ ବହୁତ ଖୁସି ହେଇଥିଲି । ଯା'ହଉ ବନିଟା ଭାରି ଭାଗ୍ୟବତୀ । ମନର ମଣିଷକୁ ଖୁବ୍ ସହଜରେ ପାଇଗଲା । ବାହାଘର ଦିନ କେଇଟା ପରେ ନବଦମ୍ପତ୍ତି ଦୁହେଁ ସୁଦୂର ବମ୍ବେ ନଗରୀକୁ ଚାଲିଗଲେ, ଯେଉଁଠି ଅବିନାଶ ମେରାଇନ୍ ଇଂଜିନିୟର୍ ଭାବେ କାମ କରୁଥିଲା । ହଠାତ୍ ସେମାନଙ୍କର ବାହାଘରର ବର୍ଷେ ନ ପୂରୁଣୁ ବନାନୀ ନାଆଁରେ ଅନେକ ଅପପ୍ରଚାର ବ୍ୟାପିଗଲା । ବନାନୀ ଅବିନାଶକୁ ଛାଡ଼ି ଅନ୍ୟ କେଉଁ ପୁରୁଷ ସାଥିରେ ରହୁଛି ବୋଲି ଶୁଣିବାକୁ ମିଳିଲା । ତା' ସହିତ ତା' ଚରିତ୍ରସଂହାରର ଅନେକ କାହାଣୀ । ମୁଁ ଚକିତ ହେଲି । ସରଳା, ଲାଜକୁଳୀ ବନି କ'ଣ ସତରେ ଏତେ ବଡ଼ ହିପୋକ୍ରାଟ୍ ପାଲଟିଗଲା ! ନାରୀ ଜୀବନର ମାନମର୍ଯ୍ୟାଦା ଓ ମହତକୁ ପାଶୋରିଦେଇ ସଂଭୋଗ ଓ ବିଳାସକୁ ନିଜର କରିନେଲା । ସେଇଦିନୁ ବନାନୀ ପାଇଁ ମୋ ମନ ଭିତରେ ଥିବା ସ୍ନେହ-ବଂଧୁତା ଓ ଭଲପାଇବା ଘୃଣାର-ସାଗର ପାଲଟିଗଲା ।

ବନାନୀ ନାରୀ ଜାତି ପାଇଁ ଏକ କଳଙ୍କ । ବନାନୀ ବ୍ୟଭିଚାରିଣୀ, ଭ୍ରଷ୍ଟା, ପତିତା ଏହି ଭାବନା ମତେ ଗ୍ରାସ କରିଗଲା । ଆଉ ଆଜି ହଠାତ୍ ତା'ର ଏ ନୂଆରୂପ, କଥା କହିବାର ଭଙ୍ଗୀ ଓ ଚଞ୍ଚଳତା ମତେ ତା' ପ୍ରତି ସଂବେଦନଶୀଳ

କରିବା ପରିବର୍ତ୍ତେ ଆକଣ୍ଠ ଘୃଣା ସୃଷ୍ଟି କରୁଥିଲା । ଏଣୁ ମୁଁ ତା' ପ୍ରଶ୍ନର ଉତ୍ତର ନ ଦେଇ ତା' ପାଖରୁ ଦୂରେଇ ଯିବାକୁ ଚେଷ୍ଟା କଲି । ହଠାତ୍ ବନାନୀ ମୋ ହାତଟାକୁ ଟାଣିଧରିଲା । ମୁହଁରେ ତା'ର ପୂର୍ବର ସେଇ ଚଳ-ଚଞ୍ଚଳ ହସ ନ ଥିଲା, ଥିଲା କଳା ମେଘର ଥମ୍ ଥମ୍ ଭାବ । ନିରୀହ କଅଁଳ ମୁହଁରେ କାରୁଣ୍ୟର ସ୍ପର୍ଶ । ବାଷ୍ପରୁଦ୍ଧ କଣ୍ଠରେ ସେ କହିଲା, "ମୁଁ ଜାଣେ ଝୁନୁ ! ତୁ ମତେ ଘୃଣା କରୁଛୁ । ମୋ ପାଖରୁ ଦୂରେଇଯିବାକୁ ଚାହୁଁଛୁ, କାରଣ ଏ ସମାଜ ଆଖିରେ ମୁଁ ପତିତା । ଅନେକ କଳଙ୍କ ଓ ଅପବାଦର ବୋଝ ବୋହି ମୁଁ ନାରୀସମାଜ ନିକଟରେ ଏକ କ୍ଷମାହୀନ ଅପରାଧୀ ପାଲଟି ଯାଇଛି । ହେଲେ କାହିଁକି ? କାହିଁକି ଝୁନୁ ? ମୋର ଏ ରୂପାନ୍ତର କାହିଁକି ? ମତେ ଏ ଦୋଷ ଦେବା ପୂର୍ବରୁ କେହି ପଚାରିଛି ? ମୋ ହୃଦୟରେ ଦୁଃଖ ଶୁଣିବାକୁ ଚେଷ୍ଟା କରିଛି ? ଦୀର୍ଘ ଦଶବର୍ଷ ଧରି ବୁକୁ ତଳେ ଦୁଃଖ, ଯନ୍ତ୍ରଣା, ଲାଞ୍ଛନା ଓ କଳଙ୍କର ଗଦା ଗଦା ନିଆଁକୁ ଚାପିଧରି ମୁଁ କେମିତି ବଞ୍ଚିଛି, ତୁ କ'ଣ ସେ କଥା ଶୁଣିବାକୁ ଇଚ୍ଛା କରୁନୁ ?" ତା'ପରେ ବନାନୀ ମତେ ଜୋର୍ କରି ବସେଇଦେଲା ଏବଂ ନିଜେ ମୋ ପାଖରେ ବସିପଡ଼ିଲା । ବହିପଡୁଥିବା ଲୁହକୁ ପୋଛିଦେଇ ଅପେକ୍ଷାକୃତ ଦୃଢ଼ କଣ୍ଠରେ କହିଲା, "ତୁ ମୋର ଅତି ପ୍ରିୟ ବାନ୍ଧବୀ ନା ! ମୋ' ଜୀବନର କୌଣସି କଥା ତତେ ଅଛପା ନାହିଁ । ଆଜି ତତେ ସବୁକଥା ଶୁଣିବାକୁ ହିଁ ହେବ ।"

"ବାହାଘର ପରେ ଅବିନାଶ ସହ ମୁଁ ବମ୍ବେ ଚାଲିଗଲି । ଦିନସବୁ ସୁଖରେ କଟିଗଲା । ଅବିନାଶ ସବୁ ସୁଖକୁ ମୋ ହାତପାଆନ୍ତାରେ ଖଞ୍ଜି ଦେଇଥିଲେ । ପାର୍ଟି, ପିକ୍‌ନିକ୍, ବଂଧୁ ମେଳରେ ମୋ' ଜୀବନ ରଙ୍ଗଭୂମି ପାଲଟିଗଲା । ମୋ' ଜୀବନ ସାର୍ଥକ ହେଇଛି ଭାବି ଖୁସିରେ ଫାଟି ପଡୁଥିଲି । ମୋ ଖୁସିକୁ ଦ୍ୱିଗୁଣ କରି ଆମ ପ୍ରେମର ପ୍ରଥମ ଅଙ୍କୁର ମୋ ଗର୍ଭରେ ସ୍ଥାନ ପାଇଲା । ଯେଉଁଦିନ ଅବିନାଶକୁ ଏ କଥା ଜଣାଇଲି, ସିଏ ଖୁସି ହେବା ପରିବର୍ତ୍ତେ ବିଚଳିତ ଓ ବିବ୍ରତ ହେବାର ଲକ୍ଷ୍ୟ କଲି । ସେ ମତେ ବୁଝାଇଲେ, "ଦେଖ ବନି, କେଇଟା ଦିନ ହେବ ଆମେ ଦାମ୍ପତ୍ୟ ଜୀବନ ଆରମ୍ଭ କରିଛେ । ଜୀବନର ସବୁ ସୁଖକୁ ମନଭରି ଉପଭୋଗ କରିବା ପୂର୍ବରୁ ଏ ଜଂଜାଳ !" ମୁଁ ଚମକି ପଡ଼ି କହିଲି, "କ'ଣ କହୁଛ ତମେ ! ସନ୍ତାନ



ପିତାମାତାଙ୍କ ପାଇଁ କ'ଣ ଜଂଜାଳ ! ସନ୍ତାନସୁଖଠାରୁ କ'ଣ ଅଧିକ ସୁଖ କିଛି ଏ ଦୁନିଆରେ ଅଛି ?" ଅବିନାଶ କହିଲେ, "ଓହୋ ! old lady ଙ୍କ ଭଳି କ'ଣ ଗୁଡ଼ାଏ ବକୁଛ ମ ! ମୋ' କଥା ମାନ। ଚାଲ abortion କରେଇନେବା।" ମୁଁ ବହୁତ ଯୁକ୍ତି କଲି। ଅଭିମାନ କଲି। ଶେଷରେ ତାଙ୍କ ଯୁକ୍ତି ନିକଟରେ ହାର ମାନି ମନକୁ ବୁଝେଇଦେଲି, ଅବିନାଶ ହୁଏତ ଠିକ୍ କହୁଛନ୍ତି ! ଯେଉଁଦିନ ଜାଣି ଜାଣି ମାତୃତ୍ୱର କଅଁଳ କଳିଟିକୁ ବିସର୍ଜନ ଦେଇଆସିଲି, ସେଦିନ ପରାଜିତ ମାତୃତ୍ୱ ମୋର ଗୁମୁରି ଗୁମୁରି କାନ୍ଦୁଥିଲା। ଅବିନାଶ କିନ୍ତୁ ଭାରି ଖୁସି ଥିଲେ। ମୋ' ମନରେ ଦୁଃଖ ନ ହେବା ପାଇଁ ମତେ ପାର୍ଟି, ପିକ୍‌ନିକ୍‌ରେ ବୁଡ଼େଇ ରଖିଲେ। କିଛିଦିନ ପରେ ମୁଁ ବି ସବୁ ଭୁଲି ପୂର୍ବ ପରି ସହଜ ଓ ସରଳ ହୋଇଗଲି। ଆସ୍ତେ ଆସ୍ତେ ମୋ ଚାଲିଚଳନ, ପୋଷାକ-ପରିଚ୍ଛଦ ସବୁଥିରେ ପରିବର୍ତ୍ତନ ଆଣିଲେ ଅବିନାଶ! କଣ୍ଢେଇଟିଏ ଭଳି ମତେ ଦିନରାତି ସଜେଇ ରଖି ଆତ୍ମତୃପ୍ତି ଲାଭ କରୁଥିଲେ।

ଆଉ ମୁଁ ! ନିହାତି ପତିବ୍ରତା ସ୍ତ୍ରୀଟିଏ ଭଳି ନିଜର ଇଚ୍ଛା ଅନିଚ୍ଛାକୁ ମନତଳେ ଚାପିରଖି ଅବିନାଶଙ୍କ ପ୍ରତ୍ୟେକ ଇଚ୍ଛା ଅନିଚ୍ଛାର ଦାସୀ ପାଲଟି ଯାଇଥିଲି । ତାଙ୍କର ଅସରା ଅସରା ପ୍ରେମର ବର୍ଷାରେ ମୁଁ ଗୋଟାସୁଦ୍ଧା ଭିଜିଯାଇଥିଲି; କିନ୍ତୁ ଧୀରେ ଧୀରେ ମୁଁ ଅନୁଭବ କଲି – ମୋ' ମନର ଅଭାବ, ମୋ ଇଚ୍ଛା ଓ ଆବଶ୍ୟକତା ଅପେକ୍ଷା ଅବିନାଶ ମୋ ରୂପ, ଯୌବନ ଓ ସୌନ୍ଦର୍ଯ୍ୟ ପ୍ରତି ଅଧିକ ଯତ୍ନଶୀଳ ହୋଇପଡ଼ିଛନ୍ତି ।

ବିଭିନ୍ନ ପାର୍ଟିରେ ବଡ଼ ବଡ଼ ଲୋକଙ୍କ ସହିତ କିମ୍ବା ତାଙ୍କ ଉପରିସ୍ଥ ଅଫିସର୍‌ଙ୍କ ସହିତ ମିଶିବାକୁ ମତେ ପରୋକ୍ଷରେ ଇଂଗିତ କରନ୍ତି । ସେମାନଙ୍କ ସହିତ ଡ୍ରିଙ୍କ୍ କରିବା, ଡ୍ୟାନସ୍ କରିବା ପାଇଁ ଛାଡ଼ିଦେଇ ନିର୍ଲଜ୍ଜ ଭଳି ସେ ଦୃଶ୍ୟକୁ ଉପଭୋଗ କରନ୍ତି । ଅନ୍ୟମାନେ ମୋର ରୂପଯୌବନକୁ ମନଭରି ପ୍ରଶଂସା କଲାବେଳେ ସେ କୃତକୃତ୍ୟ ହୋଇଯାଆନ୍ତି । ଏଥିରେ କାଳେ ତାଙ୍କର ସମ୍ମାନ ବଢ଼ିବ । ପଦୋନ୍ନତି ହେବ । ମୁଁ ଭାବେ, ଅବିନାଶ କେମିତିକା ପୁରୁଷ ସତେ ! ନିଜ ସ୍ତ୍ରୀର ନଗ୍ନଶରୀରକୁ ଅନ୍ୟମାନଙ୍କ ହାତରେ ଖେଳିବାକୁ ଛାଡ଼ିଦେଇ ପୁରୁଷପଣିଆ ଦେଖାଇବାର ନିର୍ଲଜ୍ଜତା ସେ ପାଇଲେ କେଉଁଠୁ ? ଏ ବିଷୟରେ କିଛି କହିଲେ ସେ କୁହନ୍ତି, "ଯୁଗ ସହିତ ପାଦ ମିଳାଇ ଚାଲିବାକୁ ତ ପଡ଼ିବ ! ତମ ରକ୍ଷଣଶୀଳ ମନ ଏ ସବୁକୁ ନଗ୍ନତା ବା ହିପୋକ୍ରାସି କହୁଥିବାବେଳେ ଆଧୁନିକ ଜୀବନଚର୍ଯ୍ୟାର ଏ ସବୁ ଯେ ଏକ ଏକ ମୂଲ୍ୟବାନ୍ ଅଂଶବିଶେଷ, ଏ କଥା କ'ଣ ତମେ ଅସ୍ୱୀକାର କରିପାରିବ ? ତା'ଛଡ଼ା, ତମେ ଜଣେ ଇଂଜିନିୟର୍‌ର ସ୍ତ୍ରୀ ବନି !"

ବାଧ୍ୟବାଧକତାରେ ହେଉ କିମ୍ବା ଅବିନାଶ ପ୍ରତି ପ୍ରେମର ଗଭୀରତା ଯୋଗୁ ହେଉ ଅଥବା ବିବାହ ବନ୍ଧନର ନିବିଡ଼ ଆକର୍ଷଣ ଯୋଗୁ ହେଉ ମୁଁ ଅବିନାଶର ପ୍ରତ୍ୟେକ କଥାକୁ ସମ୍ମାନର ସହିତ ପାଳନ କରୁଥିଲି । ଏତେ ପ୍ରାଣପ୍ରାଚୁର୍ଯ୍ୟ, ଭୋଗବିଳାସ ଭିତରେ ବୁଡ଼ିରହି ମଧ୍ୟ ନିର୍ଜନ ମୁହୂର୍ତ୍ତରେ ମୋ ଭିତରର ନାରୀତ୍ୱ ବିଳପି ଉଠୁଥିଲା । ସନ୍ତାନଟିଏ ପାଇଁ ସୁପ୍ତ ମାତୃତ୍ୱ ମତେ କ୍ଷତାକ୍ତ କରୁଥିଲା ।

ଏହା ଭିତରେ ଦେଢ଼ ବର୍ଷ ବିତି ଯାଇଥିଲେ ମଧ୍ୟ ମୋ'ଠାରେ ସନ୍ତାନସମ୍ଭବା

ହେବାର କୌଣସି ଲକ୍ଷଣ ଦେଖାଯାଉ ନ ଥିଲା । ମୋ ମନର ଆଶଙ୍କା ଦୂର କରିବା ପାଇଁ ଅବିନାଶଙ୍କ ଅଜାଣତରେ ମୁଁ ମୋର ଡାକ୍ତରୀ ପରୀକ୍ଷା କରାଇଲି । ଯେତେବେଳେ ଡାକ୍ତରଙ୍କଠାରୁ ଜାଣିଲି ଯେ, ମୁଁ ମାଆ ହେବାକୁ ଅକ୍ଷମ, କାରଣ ମୋର ବନ୍ଧ୍ୟାକରଣ କରାଯାଇଛି, ସେତେବେଳେ ମୋ' ଚାରିପଟ ପୃଥିବୀଟା ମତେ ଅଚିହ୍ନା ଲାଗିଲା । ଅଚାନକ ବିସ୍ଫୋରଣରେ ମୋ ରକ୍ତ-ମାଂସ-ହାଡ଼ ସବୁ ଯେମିତି ତରଳ ଲାଭା ସ୍ରୋତ ପାଲଟିଗଲା । ମୋ ହୃଦୟରେ ଅବିନାଶ ପ୍ରତି ଅଜସ୍ର ଘୃଣା ଭରିଗଲା । ସେଦିନ ମୋ ପ୍ରଶ୍ନର ଉତ୍ତରରେ ଅବିନାଶ କ'ଣ କହିଥିଲେ ଜାଣୁ ? ସେ କହିଲେ, "ମୁଁ ତମର ସ୍ୱାମୀ ! ମୁଁ ଯେଉଁଥିରେ ସୁଖୀ ହେବି, ତମେ ତାହା ମାନିବାକୁ ବାଧ୍ୟ ! ମୁଁ ସନ୍ତାନ ଚାହେଁନା । ମୁଁ ପିତୃତ୍ୱ ଚାହେଁନା । ମୁଁ ଚାହେଁ ଚିରଯୌବନା ନାରୀଟିଏ । ଯିଏ ମୋ ପାଇଁ ଐଶ୍ୱର୍ଯ୍ୟ, ପ୍ରତିପତ୍ତି ଓ ସମ୍ମାନର ଅସରନ୍ତି ଉତ୍ସଟିଏ ହେଇଥିବ ।"

ତାଙ୍କର ଏହିକଥା ପଦକରେ ବଧୂ ହେବାର ଗୌରବ, ମାଆ ହେବାର ସ୍ୱପ୍ନ, ବିବାହ ଭଳି ପବିତ୍ର ବନ୍ଧନର ମୋହ ମୁଁ ସେଇ ମୁହୂର୍ତ୍ତରେ ଛିନ୍ନ କଲି ଆଉ ଆମ ପ୍ରେମର ଦସ୍ତାବିଜ୍ ଓ ବିବାହର ମିଛ ଦଲିଲ୍‌ଟାକୁ ଟିକି ଟିକି କରି ଫିଙ୍ଗିଦେଇ ଆସିଲି ତାଙ୍କର ଘୁଣଲଗା ପଙ୍କିଳ ଜୀବନ ପରିଧିକୁ । ପ୍ରତିହିଂସାର ନିଆଁରେ ଜଳି ଜଳି ମୁଁ ଶୁଦ୍ଧ ସୁବର୍ଣ୍ଣ ତ ହେଲିନି, କଳଙ୍କଲଗା କଳାପାହାଡ଼ଟିଏ ପାଲଟିଗଲି । ଜୀବନର ତ୍ରିଶଙ୍କୁ ଅବସ୍ଥାରେ ପଛକୁ ଫେରିବାର ବାଟ ନ ଥିଲା କି ପୁଣିଥରେ ଜୀବନ ସହିତ ଲୁଚକାଳି ଖେଳିବାର ସାମାନ୍ୟତମ ଅଭିଳାଷ ମଧ୍ୟ ନ ଥିଲା । ତୁ ଜାଣୁ ବନି ! ନାରୀ ପ୍ରେମରେ ଯେମିତି ପବିତ୍ର, ଭଲପାଇବାରେ ଯେତିକି ଗଭୀର ହେଇପାରେ, ପ୍ରତିହିଂସା ଓ ପ୍ରତିଶୋଧରେ ତା'ଠାରୁ କାହିଁ କେତେ ବେଶୀ ଭୟଙ୍କର ହେଇପାରେ । ଆଉ ଆଜି ମୁଁ ସଂବେଦନଶୀଳ ନାରୀଟିଏ ନୁହେଁ । ଯେଉଁ ରୂପ ଓ ଯୌବନ ପାଇଁ ଅବିନାଶ ମୋତେ କାଠର କଣ୍ଢେଇ ଭାବି ନଚେଇ ନଚେଇ ସର୍ବହରା କରିଦେଲେ, ସେଇ ରୂପ ଯୌବନର ଖେଳ ନିଜ ଇଚ୍ଛାରେ ଖେଳି ମୁଁ ସମଗ୍ର ପୁରୁଷ ଜାତିକୁ ସର୍ବସ୍ୱାନ୍ତ କରିବାକୁ ସଂକଳ୍ପବଦ୍ଧ। ପ୍ରେମ ଦେଇ ମୁଁ ପ୍ରତାରଣା ପାଇଛି । ମନ ଦେଇ ମୁଁ ଯନ୍ତ୍ରଣା ପାଇଛି । ବିଶ୍ୱାସ କରି ବିଷପାନ କରିଛି । ଆଜି ମୁଁ ସେଇ

ମନ ଦିଆନିଆ ଖେଳ ଖେଳୁଛି । ଅବିନାଶ ଭଳି ଉଚ୍ଚପଦବୀ, ଐଶ୍ୱର୍ଯ୍ୟ, ଭୋଗବିଳାସ-ଲିପ୍‌ସୁ ପ୍ରତିଟି ପୁରୁଷ ସହିତ ଲୁଚକାଳି ଖେଳି ମୋର ଅପମାନିତ ନାରୀତ୍ୱ, ବୁଭୁକ୍ଷୁ ମାତୃତ୍ୱ ଟିକେ ଶାନ୍ତି ପାଉଛି ତ!

ଝୁନୁ ! ତମମାନଙ୍କ ପାଇଁ ଯେଉଁଟା ଅବାଟ, ତାହା ଆଜି ମୋ ପାଇଁ ଏକମାତ୍ର ବାଟ । ଆଉ କେଉଁ ବାଟରେ ଯାଇଥିଲେ ମୁଁ କ'ଣ ମୋ' ମନର ନିଆଁକୁ ଶାନ୍ତ କରାଇ ପାରିଥା'ନ୍ତି ? ନା, ଝୁନୁ ! ବରଂ ଆଉ କାହା କାମନା-ବେଦୀରେ ବଳିଟିଏ ସାଜିଥା'ନ୍ତି । ମୁଁ ଜାଣେ ଝୁନୁ ! ଦୁନିଆ ଓ ସମାଜ ପାଖରେ ଆଜି ମୁଁ ରୂପଜୀବୀ, ପତିତା ! ନାରୀ ଜୀବନର କଳଙ୍କ । ହେଲେ ତୁ ତ ସବୁ ଶୁଣିଲୁ । ତୁ ହିଁ ମୋର ବିଚାରକ । ତୁ ହିଁ ବିଚାର କରିବୁ ମୋର ପାପପୁଣ୍ୟ । ତୁ ହିଁ କହିପାରିବୁ ମୋ ପାଇଁ ବାଟ କିଏ ? କେଉଁଟା ଅବାଟ ?

ଆଉ କିଛି ନ କହି ବନାନୀ ମୋ ପାଖରୁ ଉଠିଗଲା । ଆଖିରୁ ଲୁହ ପୋଛି ଚଷମା ଲଗାଇଲା । ଅଦୂରରେ ଜଣେ ସୁଦର୍ଶନ ଯୁବକ ତାକୁ ଅପେକ୍ଷା କରିଥିଲେ । "ହାୟ୍..... ଡାର୍ଲିଂ..... କହି କିଛି ନ ଘଟିବା ଭଳି ଝୁଲି ଝୁଲି ବନାନୀ ଚାଲିଗଲା । ଥରଟିଏ ପଛକୁ ଫେରି ଚାହିଁଲାନି କି ମୋ'ଠାରୁ ବିଦାୟ୍ ନେବାର ଆବଶ୍ୟକତା ମନେକଲାନି । ସମୁଦ୍ରର ଢେଉଭଳି ଯେମିତି ଅଚାନକ ମାଡ଼ି ଆସିଥିଲା ସେମିତି ନୀରବରେ ଚାଲିଗଲା । ତା' ପାଇଁ ମୋ ମନ ଭିତରେ ଗଦା ଗଦା ଚିନ୍ତା, ସଂବେଦନା, ମମତା ଓ କରୁଣାର ଢେଉସବୁ ମଥା ପିଟୁଥିଲେ। ମୋ' ମନର ଭାବ ଅପ୍ରତ୍ୟାଶିତ ଭାବେ ପରିବର୍ତ୍ତିତ ହେଇଯାଇଥିଲେ । ତା'ର ସେଇ କଥାପଦକ ମୋ' ହୃଦୟରେ ପ୍ରତିଧ୍ୱନିତ ହେଉଥିଲା, "ତୁ ହିଁ କହିପାରିବୁ ବାଟ କିଏ ? କେଉଁଟା ଅବାଟ ?"





# ଉଚ୍ଛକପାଳ

ବେଡ୍ ଉପରେ ଶୋଇରହି ଆଖି ଦୁଇଟି ମୁଦିଦେଲା ମନିଷା । ଆଖିରେ ନିଦ ନାହିଁ । ସ୍ୱପ୍ନ ବି ନାହିଁ । ସେ ଖାଲି ଆଖିବୁଜି ଶୋଇବାର ଛଳନା କରୁଥିଲା । ଚାରିଆଡ଼ ନିର୍ଜନ, ନିଛାଟିଆ, କ୍ୱାର୍ଟର୍‌ଟିରେ ସେ ଏକା । ଏକାନ୍ତ ଭାବେ ଏକା । ଏଇ ନିଃସଙ୍ଗତା ଭିତରେ ସେ ଅଜୟଙ୍କ ପ୍ରଶ୍ନର ଉତ୍ତର ଖୋଜୁଥିଲା । ଆଜି କି ଉତ୍ତର ସେ ଦେବ ଅଜୟଙ୍କୁ ! ଅଜୟଙ୍କ ପ୍ରଶ୍ନର ଉତ୍ତର ଖୋଜୁ ଖୋଜୁ ଉଦାସ ଅପରାହ୍ଣର ନିଃଶବ୍ଦତା ମନିଷାର ଚିନ୍ତା, ଚେତନାକୁ ଏକାକାର କରି ଟାଣି ନଉଥିଲା ପଛକୁ ପଛକୁ । ଧୀରେ ଧୀରେ ମନିଷାର ମାନସପଟରେ ଚହଲିଉଠିଲା ଛିଣ୍ଡା ଅସଜଡ଼ା ମୁହୂର୍ତ୍ତସବୁ ।

ମଧୁପୁର ଗାଁ'ର ଚପଳା କିଶୋରୀ ମନିଷା । ବାପା ତା'ର ପ୍ରାଇମେରୀ ସ୍କୁଲ୍‌ର ଶିକ୍ଷକ । ମାଟ୍ରିକ୍ ପାସ୍ କଲା ପରେ ପାଠପଢ଼ାରେ ଡୋରି ବନ୍ଧା ହେଲା । ମଧ୍ୟବିତ୍ତ ପରିବାରର ଝିଅ ସେ । ତା' ତଳେ ଆଉ ଦୁଇଟି ଭାଇ ଓ ଭଉଣୀ । ତା'ଛଡ଼ା ତା' ଭଳି ବଢ଼ିଲା ଝିଅ ଆଉ ପାଠ ପଢୁ, ଏ କଥା ମନିଷାର ବୋଉ ପସନ୍ଦ କରି ନ ଥିଲେ । ସୁଗୃହିଣୀଟି ଭଳି ମନିଷା ଘର କାମରେ ଧୂରନ୍ଧର ଥିଲା । ଝିଅ ଘିଅ । ବେଶିଦିନ ଘରେ ରଖିଲେ ଖରାପ । ଗାଁ' ମାଇପେ ଟୁପ୍‌ଟାପ୍ ହୁଅନ୍ତି, "ଏତେବଡ଼ ବଢ଼ିଲା ଝିଅକୁ ଘରେ ରଖିଲେ କୁଳଦେବତା ପାଣି ପାଇବେଟି !" ସବୁ ଶୁଣନ୍ତି ପ୍ରତାପବାବୁ ଓ ଶକୁନ୍ତଳା ଦେବୀ; କିନ୍ତୁ କ'ଣ କରିବେ ? ପାଖରେ ସମ୍ବଳ

ନାହିଁ ଯେ ଝିଅକୁ ବାହା ଦେବେ ! ଭଲ ଘର, ଭଲ ବରଟିଏ ଖୋଜିଲା ବେଳକୁ ଯାନିଯଉତୁକର ଭାଉ ଦେଖି ମନ ମରିଯାଉଛି । ଝିଅଟା ବୋଲି କ'ଣ ତାକୁ କାହା ଘରେ ଗୁଞ୍ଜିଦେଇ ଆସିବେ ! ଶେଷରେ ମନିଷାର ବାହାଘର ସ୍ଥିର ହୋଇଗଲା ପାଖ ଗାଁ' ଗୋବିନ୍ଦପୁରର ହରିମିଶ୍ରଙ୍କ ପୁଅ ସହିତ । ଭଲ ଖାନଦାନି ପରିବାର । ସଂପତ୍ତିବାଡ଼ି ଅଛି । ପୁଅଟି ବି.କମ୍ ପାସ୍ କରି ସେକ୍ରେଟାରୀଏଟ୍‌ରେ କିରାନୀ ଚାକିରି କରିଛି । ସେମାନେ ମନିଷାକୁ ଦେଖିବାକୁ ଆସିବାବେଳେ ପ୍ରତାପବାବୁ ନିଜର ଅବସ୍ଥା ଜଣାଇବାକୁ ଯାଇ କହିଥିଲେ, "ଝିଅକୁ ମୁଁ ଯୋଗ୍ୟ କରିଛି । ସର୍ବଗୁଣସଂପନ୍ନା ବୋହୂଟିଏ ପାଇବେ । ଝିଅଟି ବ୍ୟତୀତ ଆପଣଙ୍କୁ ଅନ୍ୟକିଛି ଦେବାଭଳି କ୍ଷମତା ମୋର ନାହିଁ ।"

ମନିଷା ତାଙ୍କର ପସନ୍ଦ ହେଇଛି, ସମସ୍ତେ ଖୁସି । "ମୋର ଏମିତି ଗୋଟେ ବୋହୂ ଦରକାର ଥିଲା ମହାପାତ୍ରେ । ଆଉ କ'ଣ ଦରକାର ?" ବାହାଘର ଦିନ ସ୍ଥିର କରି ସେମାନେ ଚାଲିଗଲେ । ଆନନ୍ଦରେ ଉଛୁଳି ଉଠିଲେ ପ୍ରତାପବାବୁ । ଶକୁନ୍ତଳା ଦେବୀ ଖୁସିରେ କାନ୍ଦିପକେଇ କହିଲେ, "ତୋ' କପାଳ ଉଚ୍ଚ ଲୋ ମାନି! ତୋ' ହାତରେ ଶଂଖା, ମୁଣ୍ଡରେ ସିନ୍ଦୂର ଦେଖିଲେ ଆମେ ଶାନ୍ତି ପାଇବୁ ।" ମନିଷାର ମନ-ଆକାଶରେ ଆଶାର ଇନ୍ଦ୍ରଧନୁ । ଷୋଡ଼ଶୀ କୁଆଁରୀ ଆଖିରେ ଚହଲା ସ୍ୱପ୍ନର ଢେଉ । ଅନାଗତ ଭବିଷ୍ୟତର ଅସୁମାରି ଆଶାରେ ରଂଗିନ ହେଇ ଉଠିଲା ଦିନରାତି । ସେ ବୁଝିପାରୁ ନ ଥିଲା ଟୋପାଏ ସିନ୍ଦୂର, ଦୁଇପଟ ନାଲିଶଙ୍ଖା ପାଇଁ ନାରୀ ମନର ଏ ଦୁର୍ବାର ଆକର୍ଷଣ, ଅସରନ୍ତି ମମତ୍ୱବୋଧ କାହିଁକି ?

ବାହାଘର ଦିନ ସାଜସଜ୍ଜାରେ ହସିଉଠୁଥିଲା ମହାପାତ୍ରବାବୁଙ୍କ କ୍ଷୁଦ୍ର ଗୃହାଙ୍ଗନଟି । ଗହଳଚହଳରେ ଫାଟି ପଡୁଥାଏ ଘର ବାହାର । ମନିଷା ବଧୂବେଶ ସାଜି ସାଥୀଙ୍କ ମେଳରେ ବସି ବସି ଥଟ୍ଟାଥାମସାରେ ବିଭୋର ହୋଇଉଠୁଥିଲା । ସାହାନାଇର ମଧୁର ଗୁଂଜରଣ ତାଳେ ତାଳେ ଉଛୁଳି ଉଠୁଥିଲା କୁଆଁରୀ ମନର ସଯତ୍ନ ସାଇତା ଆବେଗ ଓ ଅନୁରାଗ ।

ହଠାତ୍ ସବୁ କୋଳାହଳ, ଆନନ୍ଦଉଲ୍ଲାସ ସ୍ତବ୍ଧ ହେଇଗଲା । ବରଧରା ଫେରିଆସିଲା । ହରିବାବୁ ମନିଷାକୁ ବୋହୂ କରିବାକୁ ସ୍ପଷ୍ଟ ମନା କରିଦେଲେ ।

ମନିଷା ଉଚ୍ଚକପାଳୀ, ଅଲକ୍ଷଣୀ । ତା' ଭଳି ଝିଅକୁ ବୋହୂ କରିନେଇ ସେ ନିଜ ପରିବାରର ଅମଙ୍ଗଳ କରିପାରିବେନି । ଏଣୁ ସେ ତାଙ୍କ ପୁଅର ବିବାହ ଅନ୍ୟତ୍ର ସ୍ଥିର କରିଛନ୍ତି । କ୍ଷଣିକ ଭିତରେ ଶ୍ମଶାନର ନୀରବତା ଛାଇଗଲା । ପ୍ରତାପବାବୁ ଓ ଶକୁନ୍ତଳା ଦେବୀ ଚେତା ହରାଇ ବସିଲେ । ଆଉ ମନିଷା ଆଖିରେ ତା'ର ଲୁହ ନ ଥିଲା । ଛାତିରେ ନ ଥିଲା କୋହ । ପଥର ମୂର୍ତ୍ତି ଭଳି ନିର୍ବାକ୍ ନିଷ୍ପନ୍ଦ ପାଲଟିଯାଇଥିଲା ମନିଷା । ଥର ଥର ହାତରେ ନିଜ କପାଳରେ ହାତ ମାରି ପରଖୁଥିଲା, 'ତା' କପାଳଟା ସତରେ କେତେ ଉଚ୍ଚ !' "ଛିଃ ! ଛିଃ ! କେଡ଼େ ଅଲକ୍ଷଣୀଟାଏ ମ !" ପାଇପଡ଼ିଶା ଓ ବନ୍ଧୁବାନ୍ଧବଙ୍କ କଟୁ କଥା ତୀର ଭଳି ମନିଷା ଛାତିରେ ଭେଦିଯାଉଥିଲା ।

ସେଦିନ ରାତିରେ ଝରକା ବାଟେ ଚାହିଁ ରହି ମନିଷା ଦେଖୁଥିଲା । ହରିମିଶ୍ରଙ୍କ ପୁଅ ବାହାଘର ରୋଶଣି । ଯେତେବେଳେ ସେ ଜାଣିବାକୁ ପାଇଲା ଯେ ତାଙ୍କ ପୁଅ କଲର ଟି.ଭି., ଫ୍ରିଜ୍, ଗଡ୍‌ରେଜ୍, ଗାଡ଼ି, ୧୦ ଭରି ସୁନା ଓ ନଗଦ ଲକ୍ଷେ ଟଙ୍କା ସହ ଅନ୍ୟାନ୍ୟ ଦାମୀ ଦାମୀ ଜିନିଷ ଯୌତୁକ ପାଇଛନ୍ତି, ସେତେବେଳେ ସେ ବୁଝିଗଲା ତା' ଉଚ୍ଚକପାଳ କେଉଁଠି ! ମନିଷା ମନେ ମନେ ବହେ ହସିଲା । କେତେ ଜଘନ୍ୟ ସତେ ଏଇ ଭଦ୍ର ମଣିଷମାନେ ! କେଡ଼େ ଇତର, କେଡ଼େ ନୃଶଂଶ ସତେ ! ସାମାନ୍ୟ କେଇଟା ଟଙ୍କା ଓ ଧନର ମୋହରେ ଏମାନେ ଏକ ନିଷ୍କଳଙ୍କ କୁଆଁରୀ କନ୍ୟା କପାଳରେ କଳଙ୍କ ଲଗାଇ ଦେବାକୁ ପାପ ମଣନ୍ତିନି ! ମନିଷା ଜାଣିଥିଲା ବିବାହ ଏକ ବ୍ରତ, ଏକ ସଂକଳ୍ପ, ବ୍ୟଭିଚାର ନୁହେଁ, ଦୁଇଟି ମନର ସରଳ ପ୍ରବାହ ହିଁ ବିବାହ । ଦୁଇଟି ମନର ସୁଦୃଢ଼ ବନ୍ଧନ ହିଁ ବିବାହ । ମନର ମମତା, ହୃଦୟର ଅନୁରାଗ, ପ୍ରାଣର ଆଶା ଓ ବିଶ୍ୱାସକୁ ନେଇ ଦାମ୍ପତ୍ୟ ଜୀବନ ଗଢ଼ାଯାଏ । ବିବାହ ଭଳି ଏକ ପବିତ୍ର ସଂପର୍କକୁ ଏ ସମାଜ ତଉଲୁଛି ଯୌତୁକର ନିକିତିରେ ! ଧନର ପ୍ରାଚୁର୍ଯ୍ୟରେ ! ଶିକ୍ଷିତ ସମାଜରେ ଏ ଯୌତୁକର ଏଇ ନିଶା ଅବାଧରେ ସଂଚରିଯାଉଛି ଆଉ ମନିଷା ଭଳି କେତେ ଯେ ନିରୀହା ଝିଅ ଯୌତୁକର ଯୂପକାଷ୍ଠରେ ବଳି ପଡୁଛନ୍ତି, ତା'ର ହିସାବ ରଖୁଛି କିଏ ? କିଏ ସଜାଡ଼ି ପାରୁଛି ସେଇ ଲାଞ୍ଛିତା କିଶୋରୀ ମନର ଅସଜଡ଼ା ସପନକୁ ? କିଏ ଫେରାଇପାରୁଛି ତା' ଓଠର ସରଳ-ହସର-ସବୁଜ ଫସଲକୁ ?

ଶକୁନ୍ତଳା ଦେବୀ ଭାଗ୍ୟର ଦୋଷ ଦେଇ ଗୁମୁରି ଗୁମୁରି କାନ୍ଦୁଥିଲେ, କିଏ ବାହା ହେବ ମନିଷାକୁ ! ଉଚ୍ଛକପାଳୀ ଆଉ ଅଲକ୍ଷଣୀର କଳାଦାଗ ତାଙ୍କ ସୁନାପ୍ରତିମା, ସର୍ବସୁଲକ୍ଷଣା ଝିଅଟିକୁ ଯେ ସମାଜଛଡ଼ା କରିଦେଲା, ବାସନ୍ଦ କରିଦେଲା । "ତୁ କାହିଁକି ଆମ କୋଳରେ ଜନ୍ମ ନେଲୁ ଲୋ ହତଭାଗୀ ! ଆମେ ତତେ କିଛି ଦେଇପାରିଲୁନି । ନା ସୁଖ ନା ଶାନ୍ତି ।" ବାହୁନି ବାହୁନି କାନ୍ଦୁଥିଲେ ଶକୁନ୍ତଳା ଦେବୀ । ମନିଷା ହୃଦୟକୁ ଶକ୍ତ କଲା । ମନେ ମନେ ସେ ନିଜେ ପଥ ସ୍ଥିର କରି ନେଇଥିଲା । ଶାନ୍ତ କଣ୍ଠରେ ସେ ବାପାବୋଉଙ୍କୁ ବୁଝେଇଦେଲା, "ଝିଅ ହେଲେ ବି ମୁଁ ଦୁର୍ବଳା ନୁହେଁ । ପୁଅଙ୍କ ଭଳି ମୁଁ ବି ନିଜ ଗୋଡ଼ରେ ଠିଆ ହୋଇପାରିବି । ମୋ ଜୀବନକୁ ସଜାଡ଼ିପାରିବି । ଶଂଖାସିନ୍ଦୂର ନାରୀର ଏକମାତ୍ର ଆବଶ୍ୟକତା ମଧ୍ୟ ନୁହେଁ । ନାରୀ ଜନନୀ-ଭଗିନୀ-ଜାୟାର ତ୍ରିବେଣୀ ସଂଗମ । ଯେଉଁ ସମାଜ ନାରୀକୁ ସମ୍ମାନ ଦେଇ ଜାଣିନି, ଯେଉଁ ମଣିଷ ନାରୀକୁ ପଣ୍ୟ ବୋଲି ମନେକରେ, ସେ ସମାଜଗଢ଼ା ନୀତିନିୟମ ନିକଟରେ ମୁଁ ମୋ ଜୀବନକୁ ଜଳାଞ୍ଜଳି ଦେବି କାହିଁକି ? ମୁଁ ମଧ୍ୟ ସମାଜର ସବୁ ଆକ୍ଷେପ, ଉପେକ୍ଷା, କଳଙ୍କ ଓ ଅପବାଦକୁ ଏଡ଼ାଇଯାଇ ନିଜସ୍ୱ ଅଧିକାର ନେଇ ବଞ୍ଚିରହିବି ।"

ତା'ପରେ ମନିଷା ଚାଲିଆସିଲା ସହରକୁ । ପାଠ ପଢ଼ିଲା । ଏମ.ଏ. ପାସ୍ କଲା ପରେ ରାଜଧାନୀର ମହିଳା କଲେଜରେ ଅଧ୍ୟାପିକା ଚାକିରିଟିଏ ପାଇଗଲା । ସେ କେବେ ଆଉ ପଛକୁ ଫେରିଚାହିଁନି । କର୍ମକ୍ଷେତ୍ରରେ ସେ ସମସ୍ତଙ୍କର ଅତି ପ୍ରିୟ ମାନିଅପା ! ଧନ, ମାନ, ସମ୍ମାନ ସବୁକିଛି ଆଜି ତା' ପାଖରେ ଭରପୂର ।

ଆଉ ଅଜୟ ! ରାଜଧାନୀର ଭିଡ଼ ଭିତରେ, ଅଂସଖ୍ୟ ଅଚିହ୍ନା ମଣିଷମାନଙ୍କ ଭିତରେ ଡକ୍ଟର ଅଜୟ ସାମନ୍ତରାୟ କେତେବେଳେ ଯେ ତା'ର ଅତି ପରିଚିତ ପାଲଟିଗଲେ, ସେ କଥା ତା'ର ସ୍ମରଣ ହୁଏନା । ପରିଚୟରୁ ଘନିଷ୍ଠତା । ଅଜୟ ମନିଷାକୁ ଗଭୀର ଭାବରେ ଭଲପାଏ । ମନିଷାର ଅତୀତ ଜାଣିବା ପରେ ବି ସେ ତାକୁ ଆପଣାର କରିନେବାକୁ ବ୍ୟସ୍ତ । ବିବାହ ପ୍ରତି ମନିଷା ହୃଦୟରେ ଥିବା ଘୃଣାଭାବ ଦୂର କରିବା ପାଇଁ ସେ ସଂକଳ୍ପବଦ୍ଧ ।

"ଦୁନିଆର ସବୁ ଲୋକଙ୍କୁ ଗୋଟାଏ ଦୃଷ୍ଟିରେ ଦେଖି ତମେ ଭୁଲ୍ କରିଛ

ମନିଷା ! ତମକୁ ଆପଣେଇ ନବାକୁ, ତମ କଳଙ୍କ ପୋଛିଦେବାକୁ ଲୋକର ଅଭାବ ନାହିଁ । ତମେ ଉଚ୍ଛକପାଳୀ ହୁଅ କି ମଙ୍ଗୁଳାକନ୍ୟା ହୁଅ, ହେଲେ ସର୍ବୋପରି ତମେ ନାରୀଟିଏ ! ତମ ଭଳି ଶକ୍ତିମୟୀ, ଦୃଢ଼ମନା ସାଥୀଟିଏ ମୋର ଦରକାର । ବାସ୍ ଏତିକି । ଆଉ ଯଦି ଏତିକି ପାଇବା ପାଇଁ ବି ମୁଁ ଅଯୋଗ୍ୟ, ତେବେ ଦୁଃଖ କରିବିନି । ସାରାଜୀବନ ମୋ ମନଲାଖି, ମୋ ପସନ୍ଦର ନାରୀଟିକୁ ହିଁ ମୁଁ ପ୍ରତୀକ୍ଷା କରି ରହିଥିବି ।"

"ମନିଷା ! ଆଘାତ ପାଇଲେ ମଣିଷ ମନରେ ଶକ୍ତି ସଞ୍ଚୟ କରେ । ଝୁଣ୍ଟି ପଡ଼ିଲେ ଠିକ୍ ଭାବେ ଚାଲିବାକୁ ଶିଖେ । ମନିଷା ! ସମାଜ ଉପରେ ଅଭିମାନ କରି ତମେ ବାହା ନ ହେଲେ ହୁଏତ ତମ ସମସ୍ୟାର ସମାଧାନ ହେଇପାରେ ! ହେଲେ ତମଭଳି ଏ ସମାଜର ଅଗଣିତ ଝିଅ, ଯେଉଁମାନେ ପ୍ରତିଦିନ ଯୌତୁକର ଅଗ୍ନିକୁଣ୍ଡରେ ଜିଅନ୍ତା ଜଳୁଛନ୍ତି ଆଉ ଯେଉଁମାନେ ଜଳିବା ପାଇଁ ଧାଡ଼ି ବାନ୍ଧି ରହିଛନ୍ତି, ସେମାନଙ୍କର କ'ଣ ହେବ ଥରେ ଭାବିଛ ? ତମେ ଯେଉଁ ସମାଜ, ଯେଉଁ ମଣିଷ ଉପରେ ଅଭିମାନ କରି ନିଜକୁ ପଥର କରିଦେଇଛ, ସେଇ ହୃଦୟହୀନ ସମାଜ, ସେଇ ସଂବେଦଶୂନ୍ୟ ମଣିଷ ତମ କଥା ଥରେ ଭାବିଛି କି ? ତମ ଅଧିକାର ତମକୁ ଫେରେଇ ଦେଇଛି କି ?"

ଆଜି ଅଜୟ୍ ଆସିବେ । ତାଙ୍କୁ କି ଉତ୍ତର ଦେବ ମନିଷା ! ଘଣ୍ଟାରେ ସଂଧ୍ୟା ଛଅଟା ବାଜିବାର ସୂଚନା । ଅସଜଡ଼ା କେଶବାସକୁ ସଜାଡ଼ିନେଇ ଝରକା ପାଖକୁ ଉଠିଆସିଲା ମନିଷା । ଅଜୟ୍ ହୁଏତ ଆସିଯିବେ ! ସତେ କ'ଣ ତା' ଅନ୍ଧାରୀ ମନରେ ଦୀପଟିଏ ଜାଳିପାରିବ ଅଜୟ୍ ! ତା' ଉଚ୍ଛକପାଳୀ କଳଙ୍କ ଦାଗଟା ସତେ କ'ଣ ଲୁଚିଯିବ ସିନ୍ଦୂରର ରକ୍ତିମାରେ !

ଉଦାସ ଚାହାଣୀ ତା'ର ଲମ୍ବି ଲମ୍ବି ଯାଉଥିଲା ଝରକା ଡେଇଁ ରାସ୍ତାର ଜନଗହଳି ଭିତରକୁ । ଅଳସୀ ସଂଜଟା ରାଜଧାନୀର ଫୁଙ୍ଗୁଳା ଦେହକୁ ଅବତରି ଆସୁଥିଲା ସଲ୍ଲଜ, ସକୁଣ୍ଠ ଭାବରେ..... ।



# ଭଙ୍ଗା ଆକାଶ

ତମେ କେବେ ସ୍ୱପ୍ନ ଦେଖିଛ ?

ତମେ କେବେ କଳ୍ପନାରେ ନିଜକୁ ନାଲିପାନ ବିବି ସଜେଇଛ ?

ତମେ କେବେ ଆଗ୍ନେୟଗିରିର ଉତ୍ତପ୍ତ ଲାଭାସ୍ରୋତରେ ଭାସି ଭାସି ଦହନକୁ ଆପଣାର କରିବା ଶିଖିଛ ?

ତମେ କେବେ ମାନସ-ଚକ୍ଷୁରେ ଆକାଶର ଅନନ୍ତ ପରିବ୍ୟାପ୍ତିକୁ ନିରୀକ୍ଷଣ କରିଛ ?

ତମେ କେବେ ଉପଲବ୍‌ଧି କରିଛ ପ୍ରଭାତ, ମଧ୍ୟାହ୍ନ, ଅପରାହ୍‌ଣ ଆକାଶର ରଂଗ ପରିବର୍ତ୍ତନକୁ ?

ତମେ କେବେ ପାପ କରିଛ ? ପାପ କରିଛ ? ପାପ କରିଛ ?

ନିଜ ପ୍ରଶ୍ନର ଉତ୍ତରରେ ନିଜେ ହସିଉଠିଲେ ମଧୁଛନ୍ଦା । ଉତ୍ତୀର୍ଣ୍ଣ-ଯୌବନା ନର୍ତ୍ତକୀ ମଧୁଛନ୍ଦା ବେଳେ ବେଳେ ଏମିତି ଅବାଞ୍ଛିତ ହସରେ ଫାଟିପଡ଼ନ୍ତି । ମୃତ୍ୟୁର ଦ୍ୱାରଦେଶରେ ଦଣ୍ଡାୟମାନ ହୋଇ ଅତୀତ ସାଗରରେ ଅବଗାହନ କରୁ କରୁ ମଧୁଛନ୍ଦା ହସନ୍ତି । ହସି ହସି ପ୍ରଳାପ କରିଉଠନ୍ତି ।

ମଧୁଛନ୍ଦା ! ନର୍ତ୍ତକୀ ମଧୁଛନ୍ଦା ! ସ୍ୱପ୍ନ ସେ ଅନେକ ଦେଖିଛନ୍ତି । ଯୌବନର ମଧୁପାର୍ବଣରେ ସେ ଥିଲେ ଅନେକ ମନର ବାଞ୍ଛିତ ନାୟିକା । ତାଙ୍କର ମାତା ଥିଲେ ବୈଶାଳୀ ନଗରର ଶ୍ରେଷ୍ଠ ନର୍ତ୍ତକୀ ଓ ଗଣିକା । ମଧୁଛନ୍ଦା ମଧ୍ୟ ମାତାଙ୍କର ବ୍ୟବସାୟକୁ ଆପଣେଇ ନେଲେ ।

ନଗରର ଉପକଣ୍ଠରେ ଅପେକ୍ଷାକୃତ ନିର୍ଜନ ସ୍ଥାନରେ ତାଙ୍କର ସୁସଜ୍ଜିତ ବାସଭବନ 'ମଧୁନିଳୟ' । ସନ୍ଧ୍ୟାତାରା ଆକାଶ ଛାତିରେ ଓଠ ଚାପି ହସିବା ପୂର୍ବରୁ

ମଧୁନିଳୟରେ ଜମିଉଠେ ହସର ଆସର। ବାଦ୍ୟ ଓ ସଙ୍ଗୀତର ତାଳେ ତାଳେ ନିର୍ଜନତା ଅଳସ ଭାଙ୍ଗେ। କାମନାଜର୍ଜରିତ ପୁରୁଷର ଉତ୍କଟ ହର୍ଷଧ୍ୱନିରେ ମୁଖରିତ ହୋଇଉଠେ ମଧୁନିଳୟ। ଆଉ ନର୍ତ୍ତକୀ ମଧୁଛନ୍ଦା ! ଫେନିଳଯୌବନା ମଧୁଛନ୍ଦା ଓହ୍ଲାଇ ଆସନ୍ତି ପୁରୁଷମେଳକୁ ସ୍ୱର୍ଗର ପରୀ ଭଳି। ସୁଗଠିତ ତନୁବଲ୍ଲରୀରେ ନୀଳବସନର ଅପୂର୍ବ ମାଦକତା। ବାଦ୍ୟର ତାଳେ ତାଳେ ମଧୁଛନ୍ଦାଙ୍କ ଅଲକ୍ତକ ରଂଜିତ ପଦଯୁଗଳ ଚଞ୍ଚଳ ହୋଇଉଠେ। ଲାସ୍ୟମୟୀ ମଧୁଛନ୍ଦା ନୃତ୍ୟର ତାଳେ ତାଳେ ଦର୍ଶକଙ୍କୁ ପରଷିଯା'ନ୍ତି ରଂଗିନ୍ ସୁରା। ସୁରା ଓ ସାକୀର ଅପୂର୍ବ ସମାବେଶରେ ପାଗଳ ହୁଅନ୍ତି ଦର୍ଶକ। ରଂଗୀନ୍ ପାନପତ୍ରରେ ଇନ୍ଦ୍ରଧନୁ ଚହଲିଉଠେ। ଚକ୍ଷୁରେ ଅମରାବତୀର ସ୍ୱପ୍ନ ଜମେ। ଶରୀରରେ କାମନାର ଜୁଆର ଛୁଟେ। ସମସ୍ତେ ମଧୁଛନ୍ଦାଙ୍କୁ ନିବିଡ଼ ବାହୁବନ୍ଧନରେ ନିକ୍ଷେପିତ କରିଦେବାକୁ ଚାହାଁନ୍ତି; ମାତ୍ର ସ୍ୱପ୍ନମୟୀ ଷୋଡ଼ଶୀ ମଧୁଛନ୍ଦା ସମସ୍ତ ଲାଳସାରୁ ଦୂରେଇ ଯାଆନ୍ତି। ମାଆଙ୍କ ଭଳି ସେ ଗଣର ହେବାକୁ ଚାହାନ୍ତି ନାହିଁ।

ନର୍ତ୍ତକୀ ହେଲେ ମଧ୍ୟ ସେ ନାରୀ। ନାରୀ ହୃଦୟର ପୂଜାଫୁଲ ଗୋଟିଏ ଦେବତା ପାଇଁ ଉଦିଷ୍ଟ। ସେ ହେଉଛନ୍ତି ମନର ଦେବତା। ମଧୁଛନ୍ଦା ସ୍ୱପ୍ନ ଦେଖନ୍ତି ଆଗାମୀ ଦିନର। ମଧୁ ଜୀବନର ମଧୁମୟ ସ୍ୱପ୍ନ; ମାତ୍ର ସେ ଯେ ନର୍ତ୍ତକୀ ! ସମାଜ ଆଖିରେ ଅପବିତ୍ର। ଦେବତାର ପୂଜାଯୋଗ୍ୟ ନୁହନ୍ତି ସେ।

ଫଗୁଣର ଏକ ଫଗୁବୋଳା ସଂଧ୍ୟାରେ ମଧୁଛନ୍ଦାଙ୍କ ସ୍ୱପ୍ନ ସାକାର ହେଲା। ଶରୀରରେ ଅପୂର୍ବ ପୁଲକ ଖେଳିଗଲା। ନୟନର ଚାହାଣୀ ସ୍ଥିର ହେଲା। ଲଜ୍ୟାର ଅରୁଣିମାରେ ପାଟଳ ହୋଇଉଠିଲା ଗଣ୍ଡଦେଶ। ତରୁଣ ଜମିଦାର ଦେବବ୍ରତ ତାଙ୍କର ପ୍ରଣୟପ୍ରାର୍ଥୀ। ତାକୁ ସେ ଜୀବନସଙ୍ଗିନୀ କରିନେବାକୁ ଚାହାଁନ୍ତି। ନର୍ତ୍ତକୀ ଜୀବନର ସକଳ କାଳିମାକୁ ଧୋଇଦେବେ ଦେବବ୍ରତ। ସେ ଜାୟା ହେବେ। ସେ ଜନନୀ ହେବେ। ଆଃ ! ଅନନଭୂତ କଳ୍ପନାରେ ଆତ୍ମବିଭୋର ହେଲେ ମଧୁଛନ୍ଦା। ଦେବବ୍ରତଙ୍କର ପ୍ରିୟତମା ମଧୁଛନ୍ଦା ବଧୂ ଜୀବନର ସକଳ ପବିତ୍ରତା ନେଇ ଜୀବନଯାତ୍ରା ଆରମ୍ଭ କଲେ। ବିଳମ୍ବିତ ରଜନୀର ମଧୁର ମୁହୂର୍ତ୍ତଗୁଡ଼ିକ ମଧୁମୟ

ହୋଇଉଠିଲା ଦେବବ୍ରତଙ୍କର ପ୍ରୀତି ପାଇ। ମଧୁଛନ୍ଦାଙ୍କ ଯୌବନର ବର୍ଣ୍ଣାଳୀରେ ଦେବବ୍ରତ ନିଶାଗ୍ରସ୍ତ ହୋଇଉଠିଲେ।

ନାରୀର ସାକାର ଦେବତା ପତି। ପତି ହିଁ ନାରୀର ପରମ ଧର୍ମ। ପତିବ୍ରତା ନାରୀ ପତି ନିକଟରେ ତା'ର ସର୍ବସ୍ୱ ସମର୍ପଣ କରି ଉତ୍‌ଫୁଲ୍ଲ ହୁଏ। ମଧୁଛନ୍ଦା କାୟମନୋବାକ୍ୟରେ ଦେବବ୍ରତଙ୍କୁ ପରମପଦରେ ଅଧିଷ୍ଠିତ କଲେ। ଅତୀତର ସକଳ ଗ୍ଲାନି, ନର୍ତ୍ତକୀ ଜୀବନର ଯନ୍ତ୍ରଣାକୁ ସେ ବିସ୍ମୃତ ହୋଇଥିଲେ।

ମଧୁଛନ୍ଦା ଅନ୍ତଃସତ୍ତ୍ୱା। ଦେବବ୍ରତଙ୍କ ପ୍ରତିଦାନ ତାଙ୍କ ଜରାୟୁରେ ରୂପ ନେଉଛି। ସନ୍ତାନର ମୁଖ ଦର୍ଶନ କରି ଗର୍ଭଯନ୍ତ୍ରଣାକୁ ଭୁଲିଯିବେ। ଦେବବ୍ରତ ମହାନ୍। କଳଙ୍କିତ ପୃଥିବୀରୁ ସାଉଁଟି ଆଣି ତାଙ୍କୁ ସ୍ୱର୍ଗବାସ ଦେଇଛନ୍ତି। ଜାୟା ହେବାର ସୌଭାଗ୍ୟ, ଜନନୀ ହେବାର ଗୌରବ ତାଙ୍କୁ ଦେଇଛନ୍ତି ଦେବବ୍ରତ। ସେ ଦେବତା। ବିଶାଳ ତାଙ୍କର ହୃଦୟ। ସ୍ୱାମୀଙ୍କର ପ୍ରେମ ନିକଟରେ ନତ ହୁଏ ମଧୁଛନ୍ଦାଙ୍କ ମସ୍ତକ।

ମାତ୍ର ସବୁ ସ୍ୱପ୍ନ କେବେ ସତ ହୁଏନା। କଳ୍ପନାରେ ନାଲିପାନ ବିବି ସାକି ହୁଏ, ବାସ୍ତବରେ ନୁହେଁ। ବାସ୍ତବ ଜୀବନ ବଡ଼ ଭୟଙ୍କର। ବଡ଼ ନିଷ୍ଠୁର ତା'ର ରଙ୍ଗ। ଦେବବ୍ରତ ଥିଲେ କାମନାଦଗ୍‌ଧ ପୁରୁଷ। ମଧୁଛନ୍ଦାର ଯୌବନକୁ ଆକଣ୍ଠ ଉପଭୋଗ କଲା ପରେ ସେ ତାକୁ ସ୍ୱୀକାର କରିବାକୁ ଅନିଚ୍ଛୁକ। ଦେବବ୍ରତଙ୍କ ଶେଷକଥା ଏବେ ବି ତାଙ୍କ ମାନସପଟରେ ଅନୁରଣିତ ହୋଇଉଠେ, "ତମଠାରୁ ମତେ ଦୂରେଇ ଯିବାକୁ ହେବ ମଧୁ ! ମୁଁ ପୁରୁଷ। ତମେ ନାରୀ। ପୁରୁଷ ନିକଟରେ ନାରୀର ଆବଶ୍ୟକତା ଯେତିକି, ତମେ ତା'ଠାରୁ ଢେର୍ ପାଇଛ। ତମେ ନର୍ତ୍ତକୀ, ପୁଣି ଗଣିକାର ସନ୍ତାନ। ଜମିଦାର ବଂଶର କୁଳବଧୂ ହେବାର ସ୍ୱପ୍ନ ଦେଖିବା ଅଳୀକମାତ୍ର। ତମକୁ ସମାଜ ଆଗରେ ପତ୍ନୀର ଅଧିକାର ଦେବା ମୋ ପକ୍ଷେ ସମ୍ଭବ ନୁହେଁ।"

ମଧୁଛନ୍ଦା ସ୍ତବ୍‌ଧ ହେଲେ। ପ୍ରଥମ ଆଘାତରେ ଯନ୍ତ୍ରଣାକୁ ଓଠ ଚାପି ସହିନେଲେ। ଉଦ୍‌ଗତ ଅଶ୍ରୁକୁ ପଣତରେ ପୋଛିନେଇ ସେ ବିନୀତ ଭାବରେ

ଅନୁରୋଧ କଲେ, "ଆପଣଙ୍କୁ ମୁଁ ମୋର ନାରୀ ଜୀବନର ସର୍ବସ୍ୱ ସମର୍ପି ଦେଇ ଦେବତାର ଆସନ ଦେଇଛି । ଭାରତୀୟ ନାରୀର ପରମ୍ପରାକୁ ନେଇ ମୁଁ ଆପଣଙ୍କ ଆଦେଶକୁ ଉପେକ୍ଷା କରିପାରିବି ନାହିଁ । ଦୂରରେ ରହି ମୁଁ ଆପଣଙ୍କ ସ୍ମୃତିରେ ଫୁଲଟିଏ ହେଇ ଝରିଯିବି, ମାତ୍ର ମୋର ଗର୍ଭକୋଷରେ ରୂପ ନେଉଥିବା ଅବୋଧ ଶିଶୁଟିକୁ ଆପଣ ପିତୃତ୍ୱରୁ ବଞ୍ଚିତ କରନ୍ତୁ ନାହିଁ । ତା'ର ବା ଦୋଷ କ'ଣ ?"

ଘୃଣା ଓ କ୍ରୋଧରେ ଫାଟି ପଡୁଥିଲେ ଦେବବ୍ରତ, "ମଧୁଛନ୍ଦା ! ସାମାନ୍ୟ ଗୋଟାଏ ଗଣିକାର ସନ୍ତାନକୁ ମୁଁ ପିତୃତ୍ୱ ପ୍ରଦାନ କରିପାରିବି ନାହିଁ । ଯଦି ଚାହିଁବ, ତେବେ ମୋ ରଙ୍ଗଶାଳାରେ ତମେ ସେହି ନର୍ତ୍ତକୀ ହୋଇ ରହିପାର । ଏହାଠାରୁ ଅଧିକ ମୁଁ କିଛି କରିପାରିବି ନାହିଁ ।"

ରିକ୍ତହସ୍ତ, ନିଃସ୍ୱହୃଦୟରେ ମଧୁନିଳୟକୁ ପ୍ରତ୍ୟାବର୍ତ୍ତନ କଲେ ମଧୁଛନ୍ଦା । ଶିଥିଳ କବରୀ । ଅବସାଦଗ୍ରସ୍ତ ଶରୀର । ରୁଗ୍ଣ ମନ । ଉପେକ୍ଷିତ ନାରୀତ୍ୱ ତାଙ୍କର ବିଳାପ କରିଉଠିଲା । ସେ ଗଣିକାର ସନ୍ତାନ, ଏଥିରେ ବା ତାଙ୍କର ଦୋଷ କ'ଣ ? ନର୍ତ୍ତକୀର ପେଶାଗ୍ରହଣ କରି ସେ ଜୀବନ ନିର୍ବାହ କରିଥିଲେ । ତାଙ୍କ ଶରୀରର ରୂପଲାବଣ୍ୟ ଦର୍ଶନ ଓ ସ୍ପର୍ଶ କରି ପୁରୁଷ ଯଦି ପବିତ୍ର ହୁଏ, ନର୍ତ୍ତକୀ ହେବାଟା ତାଙ୍କର ପାପ ହେବ କାହିଁକି ? କାମନାପାଗଳ ଅନ୍ଧମଣିଷକୁ ସେ କ'ଣ ଅନ୍ଧକାରର ଆଦିମ ନିଆଁରେ ଜାଳିବାକୁ ଚେଷ୍ଟା କରିଥିଲେ ?

ତେବେ ସେ ସମାଜ ପାଖରେ ନିକ୍ଷେପିତା କାହିଁକି ? କାହିଁକି ସେ ଘୃଣ୍ୟ ? ଯେଉଁ ପୁରୁଷ ରାତ୍ରିର ଅନ୍ଧକାରରେ ତାଙ୍କ ଶରୀରକୁ ପରମ ଆଗ୍ରହରେ ଜଡ଼ାଇ ଧରେ ଆଉ ଦିନର ଆଲୋକରେ ଛଳନା କରେ, ସେ କ'ଣ ପବିତ୍ର ? ସେ କ'ଣ ସାମାଜିକ? ନାରୀ କ'ଣ ଏକ ଖେଳନା, ଯାହାକୁ ନେଇ ପୁରୁଷ ମନଇଛା ଖେଳିପାରେ ? ନାରୀ କ'ଣ ଖାଲି ପୁରୁଷର ଶଯ୍ୟାସଙ୍ଗିନୀ ?

ଅନାଗତ ଶିଶୁଟି ପାଇଁ ମଧୁଛନ୍ଦା ଜୀବନକୁ ଜାଳିଦେବାକୁ ଚାହିଁଲେ ନାହିଁ । ସ୍ୱାମୀଙ୍କର ପ୍ରେମର ପ୍ରତିଦାନ, ତାଙ୍କ ନାରୀ ଜୀବନର ପ୍ରଥମ ପ୍ରଣୟର ବିଜୟ ସ୍ମାରକୀ ଶିଶୁଟି ପାଇଁ ସେ ସମସ୍ତ କାଳିମାକୁ ବହନ କରି ବଞ୍ଚିରହିବେ ।

'ମଧୁନିଳୟ'ରେ ଆନନ୍ଦର ଢେଉ ଖେଳିଗଲା । ନର୍ତ୍ତକୀ ମଧୁଛନ୍ଦା ପୁତ୍ରବତୀ ହେଲେ । ପୁତ୍ରର କୋମଳ ରୂପଲାବଣ୍ୟ, ସରଳ, ଶାନ୍ତ ମୁଖମଣ୍ଡଳ ଦର୍ଶନ କରି ଉପେକ୍ଷିତା ମଧୁଛନ୍ଦା ଆତ୍ମବିଭୋର ହୋଇଉଠିଲେ । ଆକାଶ ଭଳି ଉଦାସ, ଶାନ୍ତ ଓ ଗମ୍ଭୀର ପୁତ୍ରର ନାମ ଦେଲେ "ଆକାଶ" ।

ପୁତ୍ରର ଭବିଷ୍ୟତ ସୁଦୃଢ଼ କରିବା ଲାଳସା ମଧୁଙ୍କୁ ଚିନ୍ତିତ କଲା । ଶିଳ୍ପୀର ପେଶାଦାର ପୋଟ୍ରେଟ୍ ହୋଇ ଧନ ଆହରଣ କରିବା ବ୍ୟତୀତ ତାଙ୍କର ଅନ୍ୟ ଉପାୟ ନ ଥିଲା । ସ୍ୱଳ୍ପ ଅର୍ଥରେ ଜୀବନ ନିର୍ବାହ କଷ୍ଟକର ହେଉଥିଲା, ମାତ୍ର ଆକାଶକୁ ଉଚ୍ଚଶିକ୍ଷିତ କରିବା ଲାଳସା ତାଙ୍କୁ ଅନ୍ଧ କରିଥିଲା । ସେ ଚାହିଁ ନ ଥିଲେ ପିତୃପରିଚୟହୀନ ଶିଶୁଟି ଅବେହଳିତ ହୋଇ ନିରାଶ ନ ହେଉ ।

ଆକାଶ ବଡ଼ ହେଇଛି । ଯୌବନର ପ୍ରଥମ ପାହାଚରେ ପଦାର୍ପଣ କରି ସେ ଚପଳ ହୋଇଉଠୁଛି । ମଧୁଛନ୍ଦାଙ୍କ ମନ ଆଶଙ୍କାଜଡ଼ିତ ହୁଏ । ଦେବବ୍ରତଙ୍କ ପରି



ଆକାଶର ମନ ଛଳନା ଓ ପ୍ରତାରଣାରେ କୁଣ୍ଠିତ ହେବନି ତ ? କିନ୍ତୁ ଆକାଶ ଥିଲା ସରଳହୃଦୟ, ଉଦାର ଓ ଗମ୍ଭୀର ସ୍ୱଭାବର ଯୁବକ । ବହୁବାର ତା'ର ମାନସପଟରେ ପ୍ରଶ୍ନ ଉଠିଛି , "ତା'ର ପିତା କିଏ ? କିଏ ତା'ର ଜନ୍ମଦାତା ?" ଏହାର ଉତ୍ତର ମାଆଙ୍କଠାରୁ ଜାଣିବାର ଇଚ୍ଛା ଥିଲେ ମଧ୍ୟ ମା'ଙ୍କର ଶୁଷ୍କ, ବିଷାଦଗ୍ରସ୍ତ ମୁଖମଣ୍ଡଳ ଦର୍ଶନ କରି ଆକାଶ ନୀରବ ରହିଯାଏ । ଆକାଶ ଦେଖେ ମାଆ ଅନେକ ସମୟରେ ଏକ ସୁଦର୍ଶନ ଯୁବକଙ୍କ ଫଟୋ ପୂଜା କରନ୍ତି । ନୟନରୁ ଧାର ଧାର ଅଶ୍ରୁ ଝରିପଡ଼େ, ମାତ୍ର ଏବେ ବି ସେ ତାଙ୍କର ପରିଚୟ ପାଇନାହିଁ । ଅଧ୍ୟୟନରେ ସେ ସବୁ ସମୟ ବ୍ୟୟ କରେ । ମାଆଙ୍କ ନିର୍ଦ୍ଦେଶରେ ଅବସର ସମୟତକ ପୁରାଣପାଠରେ ବ୍ୟୟିତ ହୁଏ ।

ଆକାଶର ସରଳ ମନରେ ପ୍ରେମର ଏକ ଛୋଟ ଲହରୀ ତରଙ୍ଗାୟିତ ହେଉଛି । ତାହା ହେଉଛି ତା'ର ସହପାଠିନୀ ଜାହ୍ନବୀର ଭଲପାଇବା । ଭଲପାଇବା ମନୁଷ୍ୟକୁ ବିଶ୍ୱାସ ଆଣିଦିଏ । ମଣିଷକୁ ଉଚ୍ଚମନା ଓ କର୍ତ୍ତବ୍ୟପରାୟଣ କରାଏ । ଅନାବିଳ ପ୍ରେମ ମନୁଷ୍ୟକୁ ସତ୍ୟର ସନ୍ଧାନ ଦିଏ । ଆତ୍ମବିଶ୍ୱାସର ସୁଦୃଢ଼ ଆସନରେ ପ୍ରତିଷ୍ଠିତ କରାଏ ।

ଜାହ୍ନବୀ ବଡ଼ଲୋକର କନ୍ୟା । ଜାହ୍ନବୀ ଆକାଶକୁ ଭଲପାଏ । ଏ କଥା ସେ ଆକାଶକୁ ଅନେକଥର ଜଣାଇଦେଇଛି । ଆକାଶ ମଧ୍ୟ ଜାହ୍ନବୀକୁ ଭଲପାଏ । ଜାହ୍ନବୀ ଭଳି ସର୍ବଗୁଣସମ୍ପନ୍ନା ଯୁବତୀ ସମସ୍ତଙ୍କର କାମ୍ୟ; ମାତ୍ର ତା'ର ସ୍ୱପ୍ନ କ'ଣ ସାର୍ଥକ ହେବ ! ଅନେକଥର ଜାହ୍ନବୀ ମଧୁନିଳୟକୁ ଆସିଛି । ମଧୁଛନ୍ଦା ସବୁ ଜାଣନ୍ତି । ତାଙ୍କର ପୁତ୍ରବଧୂ ହେଲେ ସେ ସୁଖୀ ହେବେ । ମଧୁର ସ୍ୱପ୍ନର ଆବେଗରେ ଚକ୍ଷୁ ମୁଦ୍ରିତ ହୁଏ । ସହସା ଅତୀତ ସ୍ମରଣ କରି ଚମକି ଉଠନ୍ତି ମଧୁଛନ୍ଦା । ଜାହ୍ନବୀର ପିତା ପିତୃପରିଚୟହୀନ ଆକାଶକୁ ସ୍ୱୀକାର କରିବେ ତ !

ସେଦିନ ଅନେକ ବିଳମ୍ବରେ ଆକାଶ ଘରକୁ ଫେରିଲା । ମଧୁଛନ୍ଦା ଲକ୍ଷ୍ୟ କଲେ ସଦାସତେଜ ମୁଖମଣ୍ଡଳରେ ତା'ର ଚିନ୍ତାର ରେଖା ସୁସ୍ପଷ୍ଟ । ମନରେ ବିଷାଦର କାଳିମା । ମାତୃହୃଦୟରେ ଆଘାତ ଲାଗିଲା । କ'ଣ ହେଇଛି ଆକାଶର ?

ଆକାଶର ସ୍ୱର ଗମ୍ଭୀର। ରୁକ୍ଷକଣ୍ଠରେ ସେ ପ୍ରଶ୍ନ କଲା, "ମାଆ ! ତୁମେ କୁହ ମୋର ପିତା କିଏ ? ତାଙ୍କୁ ତ ମୁଁ କେବେ ଦେଖିନି। ତୁମେ ମଧ୍ୟ କେବେ ମତେ ତାଙ୍କର ପରିଚୟ ପ୍ରଦାନ କରିନାହଁ। ବହୁ ପୁରୁଷଭୋଗ୍ୟା ନର୍ତ୍ତକୀର ମୁଁ ଯେ ଜାରଜ ସନ୍ତାନ, ଏହା କ'ଣ ସତ୍ୟ ?"

ମଧୁଛନ୍ଦା ନୀରବ। ଶିରାପ୍ରଶିରାରେ ଯେମିତି ରକ୍ତପ୍ରବାହ ବନ୍ଦ ହୋଇଆସୁଛି। ମୃତ୍ୟୁ ଯଦି ତାଙ୍କୁ ଶୀତଳ ହସ୍ତରେ ଆଲିଙ୍ଗନ କରିଥା'ନ୍ତା, ତେବେ ବି ସେ ଏମିତି କଡ଼ ପାଲଟି ନ ଥା'ନ୍ତେ।

"ଆକାଶ ! ଧନ ମୋର। ତୁ ଜାରଜ ନୋହୁଁ। ତୁ ଜମିଦାର ଦେବବ୍ରତଙ୍କ ଔରସଜାତ ସନ୍ତାନ। ମୁଁ ନର୍ତ୍ତକୀ ସତ, ମାତ୍ର ବହୁ ପୁରୁଷଭୋଗ୍ୟା ନୁହେଁ। ତୋ ପିତା ମୋ ହୃଦୟ ଓ ଶରୀରର ଏକମାତ୍ର ଅଧିଶ୍ୱର।"

"କିନ୍ତୁ ମାଆ ! ତମେ କାହିଁକି ଏକାକିନୀ ନିର୍ବାସିତାର ଜୀବନଯାପନ କରୁଛ ?" ତୀବ୍ର କଣ୍ଠରେ ସ୍ୱଗତୋକ୍ତି କଲା ଆକାଶ।

"ଆକାଶ !" କୋହଉଚ୍ଛୁଳା କଣ୍ଠରେ କହିଲେ ମଧୁଛନ୍ଦା, "ପିତା ତୋର ନର୍ତ୍ତକୀର ଅପବାଦ ଦେଇ ମତେ ଉପେକ୍ଷା କଲେ। ତୋର ପିତୃତ୍ୱକୁ ମଧ୍ୟ ଅସ୍ୱୀକାର କଲେ।"

"ମାଆ !" ରୁଦ୍ଧ ଆବେଗରେ ଉଚ୍ଛୁଳି ଉଠିଲା ଆକାଶ। ସରଳ ହୃଦୟରେ ତା'ର ଝଡ଼ ସୃଷ୍ଟି ହୋଇଛି। ମଧୁଛନ୍ଦା ବୁଝିପାରିଲେ ଯାହା ସେ ଦୀର୍ଘଦିନ ଆକାଶଠାରୁ ଗୋପନ ରଖିଥିଲେ, ସେହି ସତ୍ୟର ଆବିଷ୍କାର କରି ଲଜ୍ୟା, କ୍ଷୋଭ ଓ ଯନ୍ତ୍ରଣାରେ ଆକାଶ ଭାଙ୍ଗିପଡ଼ିଛି।

"ମାଆ ! ମତେ ତମ ଜଠରର ଅନ୍ଧକାରରେ ବିଲୀନ ହେବାକୁ ନ ଦେଇ ପୃଥିବୀର ଆଲୋକକୁ କାହିଁକି ଘେନି ଆସିଲ ? ଏ ସମାଜରେ ମୋର ସ୍ଥାନ କାହିଁ? ମତେ ସମସ୍ତେ ନର୍ତ୍ତକୀର ଜାରଜ ସନ୍ତାନ କହି ଉପହାସ କରୁଛନ୍ତି। ପିତୃପରିଚୟହୀନ ହୋଇ ମୁଁ ସମାଜରେ ପ୍ରତିଷ୍ଠିତ ହେବି କିପରି ? କାହିଁକି

ତମେ ମତେ ଜନ୍ମ ଦେଲ ? ଥରେ ଭାବିଲନି ମୋର ଅନ୍ଧକାର ଭବିଷ୍ୟତ ବିଷୟରେ? ଏ ଭଳି ଏକ ଘୃଣ୍ୟ ଜୀବନଯାପନ କରିବା ଅପେକ୍ଷା ମୃତ୍ୟୁ ମୋ ପାଇଁ ଶ୍ରେୟସ୍କର । ଆଜିଠାରୁ ମୁଁ ତୁମର କେହି ନୁହେଁ । ତୁମକୁ ମାଆ ବୋଲି ସମ୍ବୋଧନ କରିବାକୁ ମୁଁ ମଧ୍ୟ ଘୃଣା କରୁଛି । ଯେଉଁ ମାଆ ସନ୍ତାନର ଭବିଷ୍ୟତକୁ ଅନିଶ୍ଚିତତାର ଭଉଁରୀରେ ଭସେଇଦିଏ ସେ ମୋର ମାଆ ହୋଇପାରେନା । ଏଇ କଳଙ୍କିତ ଜୀବନକୁ ନେଇ ମୁଁ ଏଇ ମୁହୂର୍ତ୍ତରେ ତମଠାରୁ ଅନେକ ଦୂରକୁ ଚାଲିଯାଉଛି ।"

"ଆକାଶ...... ଆକାଶ...... ।" ମଧୁଛନ୍ଦାଙ୍କ ଆକୁଳ ଆହ୍ୱାନକୁ ଉପେକ୍ଷା କରି ଆକାଶ ଚାଲିଗଲା । ଅଦିନଝଡ଼ ଭଳି ଆକାଶ ମଧୁଛନ୍ଦାଙ୍କ ଜୀବନରୁ ଦୂରେଇଗଲା । ଥରେମାତ୍ର ବୁଝିବାକୁ ଚେଷ୍ଟା କଲାନି ମାତୃହୃଦୟ କେତେ ନିଃସହାୟ । କେତେ କରୁଣ ତା'ର ଉପେକ୍ଷିତ ନାରୀତ୍ୱ !

ଆକାଶ ନିରୁଦ୍ଦିଷ୍ଟ ହେବାର ଆଜିକୁ ଦୁଇବର୍ଷ ହେଇଗଲା । ସେଇଦିନୁ ମଧୁଛନ୍ଦା ଶଯ୍ୟାଶାୟୀ । ଯକ୍ଷ୍ମାରୋଗର ଜୀବାଣୁ କଲିଜାକୁ ଟିକି ଟିକି କରି କାଟିଦେଉଛି । ନିଃସଙ୍ଗ ତାରାଟିଏ ଭଳି ଜୀବନ ଓ ମୃତ୍ୟୁ ସହିତ ଲଢ଼େଇ କରି ମଧୁଛନ୍ଦା ଆଜି ଅବସନ୍ନ । ପାଣ୍ଡୁର ଶରୀରରେ ଅସ୍ତରାଗର ସୂଚନା । ମଳିନ ମୁଖମଣ୍ଡଳ ଅଶ୍ରୁସିକ୍ତ । ଏବେ ବି ସେ ଆକାଶର ପ୍ରତୀକ୍ଷା କରିଛନ୍ତି । ପ୍ରତିକ୍ଷିତ ମାତୃହୃଦୟ ତାଙ୍କର ଆକାଶ ପାଇଁ ଝୁରୁଛି ।

ଜୀବନଟା ସାରା ଜଳି ଜଳି ମଧୁଛନ୍ଦା କ'ଣ ପାଇଛନ୍ତି ? ପ୍ରେମ ଦେଇ ପ୍ରତିଦାନରେ ଛଳନାରେ ବିଷପାନ କରି ସେ ନିର୍ବାସିତା ହେଲେ । ଦେବବ୍ରତ ଅନାହୂତ ଭାବରେ ଯେଉଳି ତାଙ୍କ ଜୀବନ-ଯମୁନାରେ ତରଙ୍ଗ ସୃଷ୍ଟି କରିଥିଲେ, ସେହିଭଳି ଅପ୍ରତ୍ୟାଶିତ ଭାବରେ ଅନିଶ୍ଚିତତାର ଭଉଁରୀରେ ଭସେଇ ଦେଇଗଲେ । ଗର୍ଭଯନ୍ତ୍ରଣା ସହି ଯାହାକୁ ଜନ୍ମ ଦେଲେ, ସେ ମଧ୍ୟ ଜୀବନର ମଧ୍ୟାହ୍ନରେ କାଳି ଦେଇଗଲା ଅତି ନିର୍ମମ ଭାବେ । ଆଗ୍ନେୟଗିରିର ଲାଭାସ୍ରୋତରେ ଜଳି ଜଳି ସେ ଜୀବନଟା ସାରା କେବଳ ଦହନକୁ ଆପଣାର କରିଛନ୍ତି । ଆଲୋକର ଉଜ୍ଜ୍ୱଳ ନିର୍ଯ୍ୟାସକୁ ଉପଭୋଗ କରିପାରିନାହାନ୍ତି ।

ସେ ଭୁଲ୍ କରିଛନ୍ତି । ନର୍ତ୍ତକୀ-ଜୀବନରେ ବଧୂ ହେବାର ସ୍ୱପ୍ନ କ'ଣ ଅପରାହ୍ଣ-ଆକାଶର ରଙ୍ଗ ଭଳି ଅବାସ୍ତବ ନୁହଁ ? ନର୍ତ୍ତକୀର କଳଙ୍କିତ ଜୀବନରେ ମାତୃତ୍ୱ କାମନା କରିବା କ'ଣ ପାପ ନୁହେଁ ? ଯେଉଁ ସମାଜ ତାଙ୍କୁ ବଧୂ ହେବାର ସୌଭାଗ୍ୟ ଦେଇନି, ସେଇ ସମାଜ କ'ଣ ଆକାଶକୁ ପବିତ୍ର ହୃଦୟରେ ଗ୍ରହଣ କରିପାରିଥା'ନ୍ତା ? ଉଚ୍ଚଶିକ୍ଷିତ ଆକାଶ ପିତୃପରିଚୟହୀନ ହୋଇ ସମାଜରେ ମୁଣ୍ଡ ଟେକି ଚାଲିଥା'ନ୍ତା କେମିତି ?

ମଧୁଛନ୍ଦା ଭୁଲ୍ କରିଛନ୍ତି । ଜୀବନଟା ସାରା ଖାଲି ଭୁଲ୍ ବାଟରେ ଚାଲି ଚାଲି ସେ ଆଜି ପରାଜିତା । ପୁଣିଥରେ ହସିଉଠିଲେ ମଧୁଛନ୍ଦା । ପ୍ରାଣଖୋଲା ହସ । ଦୁଃଖ ଭିତରେ ହସିବାକୁ ସେ ଶିଖିଛନ୍ତି । ଏତେବଡ଼ ପୃଥିବୀରେ ସେ ଆଜି ଏକା, ନିଃସହାୟ । ଓଃ .... ଛାତିରେ ଅସହ୍ୟ ଯନ୍ତ୍ରଣା । ନିର୍ବାଣୋନ୍ମୁଖୀ ପ୍ରଦୀପ ଭଳି ଶେଷଥର ପାଇଁ ଖୁବ୍ ଜୋରରେ ଚିତ୍କାର କରିଉଠିଲେ ମଧୁଛନ୍ଦା, "ଆକାଶ ..... ଆକାଶ.... ।"

ଲଜ୍ଜାବତୀ ସନ୍ଧ୍ୟା ଅବତରଣ କରିଆସୁଥିଲା ପୃଥିବୀପୃଷ୍ଠକୁ । ଦେବ ମନ୍ଦିରରୁ ଭାସିଆସିଲା ସନ୍ଧ୍ୟା ଆରତିର ଶଙ୍ଖଧ୍ୱନି । ବୈଶାଳୀର ପଥଧାରରେ ଆଲୋକ ଜଳିଉଠିବା ପୂର୍ବରୁ 'ମଧୁନିଳୟ'ର ମଧୁଚନ୍ଦ୍ରିକା ବୈଶାଳୀର ଶ୍ରେଷ୍ଠ ନର୍ତ୍ତକୀ, ପ୍ରଖ୍ୟାତ ସୁନ୍ଦରୀ, ଚିର ଅବହେଳିତା ନାରୀ ମଧୁଛନ୍ଦାଙ୍କର ଅଶାନ୍ତ ପ୍ରାଣପକ୍ଷୀ ବାୟୁମଣ୍ଡଳର ଅନନ୍ତ ପରିବ୍ୟାପ୍ତିରେ ଲୀନ ହୋଇଯାଇଥିଲା ।





# ଚିଠି

"ଏଇ ନିଅ, ତମର ଚିଠି ।" ଚାରିପାଞ୍ଚ ଖଣ୍ଡ ଚିଠି ଟେବୁଲ୍ ଉପରେ ପକେଇ ଦେଇ ଦୁମ୍ ଦୁମ୍ ପାଦ କଚାଡ଼ି ଅଜୟ୍ ଶୋଇବା ଘରକୁ ପଶିଗଲେ । ତାଙ୍କ ମୁହଁରେ ଫୁଟି ଉଠୁଥିବା ଘୃଣା ଓ ବିରକ୍ତିର ଫେଣ୍ଟାଫେଣ୍ଟି ଭାବ ଦେଖି ଲୀନା ବୁଝିଗଲା ଏ ଚିଠି କେଉଁଠୁ ଆସିଛି । ହଁ, ହେଇଥିବ କେଉଁ କବିତାପ୍ରେମୀ ଦରଦୀ ମଣିଷଟିଏ ଅବା ସାହିତ୍ୟପାଗଳ ଭାବପ୍ରବଣ ପାଠକଟିଏ । କବିତାର ଭାବ, ଭାଷା ଓ ଦରଦ ଛୁଇଁଯାଇଥିବ ମନର ଦିଗ୍‌ବଳୟକୁ ଆଉ ଭାବାବେଗରେ କବୟିତ୍ରୀଙ୍କୁ ସ୍ନେହଭରା ପତ୍ରଟିଏ ଲେଖି ପକେଇଥିବ; କିନ୍ତୁ ହାୟ୍ ! ଅଜୟ୍ ବୁଝେନା ମଣିଷ ମନର ଏ ଭାବନା, ଏ ଦରଦ, ଏ ଉଦ୍‌ବେଳନକୁ । ନାରୀ ପାଖକୁ ପୁରୁଷଟିଏ ଚିଠି ଲେଖିବାର ଅର୍ଥ ତା' ପାଖରେ ଅନ୍ୟ କିଛି ମାନେ ରଖେନା । ନାରୀ ଓ ପୁରୁଷ ମଧ୍ୟରେ ଥିବା ସଂପର୍କର ମଧୁରତାକୁ ସେ ବୁଝେନା ।

ଲୀନାର କବିତା ଅନେକ ପତ୍ରପତ୍ରିକାରେ ପ୍ରକାଶ ପାଏ । ପାଠକୀୟ ଶ୍ରଦ୍ଧା, ସମ୍ମାନ ଓ ପ୍ରେରଣା ତାକୁ ଅନେକ ମିଳିଛି । ଲୀନାର ମନେଅଛି ତା'ର କବିତାଟିଏ ପଢ଼ି ଅଜୟ ତାକୁ ଜୀବନସାଥୀ ରୂପେ ନିର୍ବିବାଦରେ ବାଛି ନେଇଥିଲେ । ବାସରରାତିର ମଧୁରଲଗ୍ନରେ ଅଜୟ ଲୀନାକୁ କହିଥିଲେ, "ତମ କବିତା ଭଳି ତମେ ବହୁତ ସୁନ୍ଦର, ବହୁତ ସରଳ ଆଉ କେତେ ନିକର ସତେ ! ତମର ଏଇ କବି ହୃଦୟଟିକୁ ମୁଁ ପ୍ରାଣଭରି ଭଲପାଏ ଲୀନା !"

ପ୍ରଥମେ ପ୍ରଥମେ ଯେତେବେଳେ ପାଠକମାନଙ୍କର ଚିଠି ଆସୁଥିଲା, ଅଜୟ କିଛି ଆପତ୍ତି କରୁ ନ ଥିଲେ, ମାତ୍ର ସେଇ ଚିଠିରେ କେତେଜଣ ଶୁଭେଚ୍ଛୁ ଭାବପ୍ରବଣ ହୋଇ ଲେଖିଦେଇଥିଲେ, "ମନ ଚିହ୍ନିବାର ଦକ୍ଷତା ତମର ଅଛି କବୟିତ୍ରୀ । ତମର ଫଟୋ, ପରିଚୟ ଆଉ କବିତାରୁ କିଛି ପଠାଅ ।" ଚିଠି ମାଧ୍ୟମରେ ଯୋଗାଯୋଗ ରଖିବାକୁ ମଧ୍ୟ ଅନୁରୋଧ କରିଥିଲେ । ଲୀନା ଖୁସିରେ ଅଧିର ହୋଇଉଠିଥିଲା । ସେମାନଙ୍କ ଚିଠିର ଉତ୍ତର ଦେଇଥିଲା; ମାତ୍ର ଅଜୟ ଏ ସବୁକୁ ଭିନ୍ନ ଦୃଷ୍ଟିରେ ଦେଖିବାକୁ ଆରମ୍ଭ କଲେ । ସେ ଲୀନାକୁ ସନ୍ଦେହ କରିବାକୁ ଲାଗିଲେ । ଟିକେ ଟିକେ କଥାରେ ଲୀନାକୁ କଟୁ କଥା କହି କଷ୍ଟଦେବାକୁ ଆରମ୍ଭ କଲେ । ଲୀନା ସବୁ ଶୁଣି ନୀରବ ରହେ । ଅନେକଥର ଅଜୟକୁ ବୁଝେଇବାକୁ ଯାଇ ବିଫଳ ହୋଇଛି ଲୀନା । ଧୀରେ ଧୀରେ ଅଜୟ ଓ ଲୀନା ଭିତରେ ବ୍ୟବଧାନ ବଢ଼ିଚାଲିଛି ।

ଲୀନା ବୁଝିପାରେନା ଅଜୟ ତାକୁ ଚିହ୍ନିବାରେ ଭୁଲ୍ କରୁଛି କାହିଁକି ? ଯେଉଁ ଅଜୟ ତା' ଲେଖା ପଢ଼ି ଉଚ୍ଛ୍ୱସିତ ପ୍ରଶଂସା କରୁଥିଲେ, ସେ ଆଜି ତାଚ୍ଛଲ୍ୟରେ ଭାଙ୍ଗିପଡୁଛି କାହିଁକି ?

"କ'ଣ ଖାଇବାକୁ ମିଳିବ ନା ନାହିଁ ? ଚିଠିଗୁଡ଼ା ହାତରେ ଧରି ଧ୍ୟାନମଗ୍ନ ହୋଇଗଲ ନା କ'ଣ ?" ଅଜୟ କଥାରେ ଲୀନା ରୋଷେଇଘର ଭିତରକୁ ପଶିଗଲା । ଜଳଖିଆ ପ୍ଲେଟ୍‌ଟା ଆଣି ଅଜୟ ପାଖରେ ଥୋଇଲା । ସେତେବେଳକୁ ଅଜୟର ମୁହଁ ରାଗରେ ଲାଲ୍ ପଡ଼ିଯାଇଥାଏ । ଅଜୟ ଜଳଖିଆ ପ୍ଲେଟ୍‌ଟା ଆଡ଼େଇ ଦେଇ କହିଲା, "ପ୍ରେମକବିତା ଲେଖିବାରେ ସିଦ୍ଧହସ୍ତ ! ମନ ଚିହ୍ନିବାରେ ପ୍ରବୀଣା । ହୁଁ !

ଲଜ୍ଜା ଲାଗୁନି ଏ ବୟସରେ ଏମିତି କବିତା ଲେଖି ପ୍ରେମପତ୍ର ପାଇବାକୁ ? ଯଦି ଏମିତି ରୋମାଣ୍ଟିକ୍ ଜୀବନ ଚାହୁଁଥିଲ, ବାହାହଉଥିଲ କାହିଁକି ? ଛିଃ, ଛିଃ । ମୁଁ ଭାବିଥିଲି କ'ଣ ଆଉ ପାଇଲି କ'ଣ ? ଆଜି ମୋର ଶେଷକଥା ଶୁଣ । ଯଦି ଏ ଘରେ ରହିବାକୁ ଚାହଁ, ତେବେ ଏ ଘରର, ସମସ୍ତ ସଦସ୍ୟଙ୍କର ମାନସମ୍ମାନ, ଇଜ୍ଜତକୁ ଜଗି ବୋହୂ ହେଇ ରୁହ ଆଉ ଯଦି କବି ହେବାକୁ ଚାହଁ, ତୁମକୁ ଏ ଘର ଛାଡ଼ିବାକୁ ପଡ଼ିବ । ଆଜି ହିଁ ଏହାର ଫଇସଲା କରିବାକୁ ହେବ । ସ୍ତ୍ରୀର କବିତା ପଢ଼ି ନିର୍ଲଜ୍ଜ ଟିପ୍‌ପଣୀ ଶୁଣିବା ଓ ବାହାବା' ନେବା ସ୍ୱାମୀ ଅଜୟ ମହାପାତ୍ର ନୁହେଁ ।'' ଏତିକି କହି ଅଜୟ ଘର ଭିତରକୁ ଝଡ଼ବେଗରେ ବାହାରିଗଲେ ।

ଲୀନା ପଥର ମୂର୍ତ୍ତିଟିଏ ପାଲଟିଗଲା । ରାଗ, ଘୃଣା ଓ କ୍ରୋଧରେ ଫାଟିପଡ଼ିଲା । କ'ଣ ନିଜକୁ ଭାବୁଛନ୍ତି ଅଜୟ ! ପତ୍ନୀ ଉପରେ ହୁକୁମ୍ ଜାରି କରିବା, ପତ୍ନୀର ଦୋଷ ବାଛିବା, ପତ୍ନୀକୁ ଉପଦେଶ ଦେବାର ଏକଚାଟିଆ ଅଧିକାର କ'ଣ ଖାଲି ପତିର ? ପତିପତ୍ନୀର ସଂପର୍କ କ'ଣ କାଚକଣ୍ଢେଇ ଭଳି, ଯାହା ସାମାନ୍ୟ ଆଘାତରେ ଭାଙ୍ଗିପଡ଼େ ? ବିବାହ କ'ଣ ଗୋଟାଏ ଜାଲ୍ ସାମାଜିକ ମୋହର, ଯେଉଁ ମୁହୂର୍ତ୍ତରେ ଇଚ୍ଛା ହେବ ତାକୁ ଚିରି ନଷ୍ଟ କରି ଦେଇହେବ ? ଅଜୟ ତ ପୁଣି ଅଫିସ୍‌ରେ ଏତେ ଝିଅଙ୍କ ମେଳରେ କାମ କରୁଛନ୍ତି । କାହାକୁ କେତେବେଳେ ଗାଡ଼ିରେ ଲିଫ୍‌ଟ୍ ଦଉଛନ୍ତି । ପାର୍ଟିରେ ତ ଅଜୟ ସୀମାର ସାମ୍ନାରେ କେତେ ଝିଅଙ୍କ ସହିତ ହସଖୁସି, ଥଟ୍ଟାତାମସା କରୁଛନ୍ତି । କାହିଁ ଲୀନା ମନରେ କେବେ ତାଙ୍କ ପ୍ରତି ସନ୍ଦେହ ସୃଷ୍ଟି ହେଇନି ! ଲୀନା କେବେ ବି ଅଜୟକୁ ପତ୍ନୀତ୍ୱର ଦ୍ୱାହି ଦେଇ କୈଫିୟତ୍ ମାଗିନି ! ଅଜୟ ସାମାନ୍ୟ କେଇଖଣ୍ଡ ଚିଠି ପାଇଁ ପୁଣି ତାହାସବୁ ଅପରିଚିତ ବ୍ୟକ୍ତିଙ୍କର, ଯେଉଁମାନଙ୍କ ସହିତ ଲୀନାର କୌଣସି ବ୍ୟକ୍ତିଗତ ସଂପର୍କ ନାହିଁ, ତାକୁ ନେଇ ଏତେ ବାଦାନୁବାଦ ! ଶେଷରେ ଘର ଛାଡ଼ିବାର ଧମକ୍ ! ଲୀନା କେମିତି ସହିବ ? ଏହା ତା' ନାରୀତ୍ୱ ପ୍ରତି ଚରମ ଅପମାନ ।

ଲୀନାର ସଫଳତା ଅଜୟ ପାଇଁ ଅସହ୍ୟ । ଅଜୟ ଯେ ସମାଜର ଆଉ କେତେଜଣ ପୁରୁଷଙ୍କ ଭଳି ହୀନମନ୍ୟ, ଏ କଥା ଲୀନା ବୁଝିଗଲା । ତା' ମନର

ବିଶ୍ୱାସ ତୁଟିଗଲା । ଏ ଘର ଛାଡ଼ିବା ତା' ପାଇଁ ଏକ କଠୋର ଶାସ୍ତି । ଆଶା, ବିଶ୍ୱାସ, ଭରସା ଓ ପ୍ରୀତିର ଜଉମୁଦ ଦିଆ ସଂସାରଟିକୁ ସେ ନିଜ ହାତରେ ଗଢ଼ିଥିଲା । ତାକୁ ଭାଙ୍ଗିଦେବା ତା' ପାଇଁ ଯେତିକି କଠିନ, କବିତା ଲେଖା ବନ୍ଦ କରିଦେବା ତା' ପାଇଁ ସେତିକି କଷ୍ଟଦାୟକ । ତା' ସଂସାର ଉଜୁଡ଼ିଗଲେ ଅଦିନ ଶ୍ରାବଣ ବର୍ଷିଯିବ ତା' ଆଖି ଯୋଡ଼ିକରେ । ତା' ଜୀବନରେ କଳଙ୍କର ଦାଗ ଲାଗିଯିବ । ହେଲେ କବିତାକୁ ଛାଡ଼ିଦେଲେ ସେ ଶ୍ୱାସରୁଦ୍ଧ ହେଇଯିବ । ମନଟା ତା'ର ଅକର୍ମଣ୍ୟ ଶିଳା ପାଲଟିଯିବ । ତା' ମନର ଭାବନା, ଆବେଗ ଓ ଅନୁରାଗ ତ ତା'ର କବିତା ! ତାକୁ ପ୍ରକାଶ କରି ନ ପାରିଲେ ସେ ଅହର୍ନିଶ ଛଟପଟ ହେଇ ମରିବ ।

ଘରସଂସାର, ସ୍ୱାମୀ, ସନ୍ତାନଙ୍କ ଜଂଜାଳ ଆଉ କବିତା, ସବୁଯାକ ତା' ପାଇଁ ନିତାନ୍ତ ଜରୁରୀ, ବଞ୍ଚିବାର ଉପାଦାନ । ଏ ପଟେ କାଚକାନ୍ଥ, ସେ ପଟେ ଗଭୀର ସାଗର । ସାମାନ୍ୟ ବ୍ୟତିକ୍ରମରେ କାଚକାନ୍ଥଟା ଭାଙ୍ଗି ଚୁରମାର ହେଇଯିବ । ଯେତେ ଚେଷ୍ଟା କଲେ ବି ଗଢ଼ିହେବନି । ଗଢ଼ିଲେ ବି ନିଜ ଅଜାଣତରେ ଫାଟଟିଏ ରହିଯିବ, ଯାହା ସାରା ଜୀବନ ଡରଉଥିବ । ଗଭୀର ସାଗରରେ ବୁଡ଼ିଗଲେ ସବୁ ଶେଷ ହେଇଯିବ । କ'ଣ କରିବ ଲୀନା ? ଲୀନା ଭାବୁଥିଲା-- ଓଃ ! ଅଜୟ ତମେ ତମ ପତ୍ନୀର ହୃଦୟକୁ ଚିହ୍ନିପାରିଲନି ? ତମ ପାଇଁ ମୁଁ କବିତା ଲେଖା ଛାଡ଼ିଦେଇପାରେ, ମାତ୍ର ମୋ ରକ୍ତର ପ୍ରତିଟି ବିନ୍ଦୁରେ, ମୋ ଶ୍ୱାସର ପ୍ରତିଟି କମ୍ପନରେ, ମୋ ମନର ପ୍ରତ୍ୟେକ କୋଣ, ଅନୁକୋଣରେ ସୃଷ୍ଟି ହେଉଥିବା ସଂଗୀତମୟ ଉଦ୍‌ବେଳନକୁ ତମେ କ'ଣ, ଏ ସୃଷ୍ଟିରେ କେହି ବି ପ୍ରତିହତ କରିପାରିବ ନାହିଁ, ନିଜେ ଲୀନା ମହାପାତ୍ର ମଧ୍ୟ ନୁହେଁ ।





# ଶୂନ୍ୟତାର ସ୍ୱର

ନିଜେ ଜଳି ଅନ୍ୟକୁ ଆଲୋକ ଦେବା ନାରୀର ଧର୍ମ ଆଉ ସେଇ ଆଲୋକର ଉତ୍ତାପକୁ ଗ୍ରହଣ କରି ନାରୀଜୀବନକୁ ଜାଳିପୋଡ଼ି ଛାରଖାର କରିଦେବା କ'ଣ ପୁରୁଷର ଧର୍ମ ?

ସ୍ୱପ୍ନ ଦେଖିବା, ସ୍ୱପ୍ନକୁ ସାକାର କରିବା, ସ୍ୱପ୍ନକୁ ଭାଙ୍ଗି ଚୁର୍‌ମାର୍ କରିଦେବା ସବୁ ମଣିଷ ହାତର କଥା । ବିବାହ ଗୋଟାଏ ସଂଯୋଗ, ଯୋଗ ବା ବିଧିନିର୍ଦ୍ଦେଶ ହେଇପାରେ; କିନ୍ତୁ ବିବାହବଂଧନକୁ ଖେଳ ମନେକରି ନାରୀର ମନକୁ ନେଇ ଖେଳିବା, ତା' ହୃଦୟର କୋମଳତାକୁ ହୃଦୟହୀନ ଭାବେ ନଷ୍ଟ କରିଦେବା, ତା' ମନର ବିଶ୍ୱାସକୁ, ତା' ପ୍ରେମର-ଗଙ୍ଗାକୁ ନିଜ ଖିଆଲରେ ବିଷାକ୍ତ କରିଦେବା କ'ଣ ସଂଯୋଗ ନା ବିଧିନିର୍ଦ୍ଦେଶ ?

ଯେଉଁ ପତ୍ନୀ ସାରାଜୀବନ ସୁଖଦୁଃଖ, ଭଲମନ୍ଦ, ହସକାନ୍ଦ, ପାପତାପ, ଆଶାନିରାଶକୁ ଚାପିରଖି ତୁଳସୀ ଚଉଁରାମୂଳେ ସଂଜବତୀ ଭଳି ଜଳି ଜଳି ପରିବାରର ଶୁଭକାମନା କରେ, ସ୍ୱାମୀର ସୌଭାଗ୍ୟ କାମନା କରେ, ସନ୍ତାନର ଦୀର୍ଘ ନିରାମୟ ଜୀବନ କାମନା କରେ, ସେଇ ପତ୍ନୀ ପରିବାର ନିକଟରେ ଏତେ ମୂଲ୍ୟହୀନ ହୋଇଯାଏ କାହିଁକି ? କ'ଣ ତା'ର ଅପରାଧ ?

ସମାଜ ଯଦି ଜଳଭଉଁରୀ ହୁଏ, ତେବେ କେବଳ ନାରୀ କ'ଣ ସେଇ ଭଉଁରୀରେ ସାହାହୀନ, ରାହାହୀନ ହୋଇ ବୁଡ଼ିଯାଉଥିବା ଭଙ୍ଗା ନୌକାଟିଏ ? ତାକୁ ରକ୍ଷା କରିବା, ସାହାରା ଦେବା କ'ଣ ପୁରୁଷର ଧର୍ମ ନୁହେଁ ?

ଦୁନିଆରେ ସବୁ ଅଧର୍ମ, ସବୁ ନିନ୍ଦା, ସବୁ ଅପବାଦ, ସବୁ କଳଙ୍କ, ସବୁ ପାପର ବୋଝ କେବଳ ନାରୀକୁ ହିଁ ବୋହିବାକୁ ପଡ଼ିଥାଏ । ପୁରୁଷ ସବୁବେଳେ ସଫା । ଚକ୍ ଚକ୍ କରୁଥିବା ସୁନା ମୁଣ୍ଡା ଆଉ ନାରୀ କଳା ଛାଡୁ ନ ଥିବା ମାଟିହାଣ୍ଡିଟାଏ । ହଁ, ଏଇକଥା ପିଲାଦିନେ ଜେଜେମା' ଅନେକଥର କହିଥିବାର ସୀମା ଶୁଣିଛି । ସେତେବେଳେ କିଶୋରୀ ମନ ତା'ର ଏ କଥାର ଅର୍ଥ ବୁଝିବାକୁ ଅସମର୍ଥ ଥିଲା । ସେତେବେଳେ ତା' ଆଖିରେ ଦୁନିଆଟା ଥିଲା ସ୍ୱପ୍ନମୟ । ରଂଗିନ୍ ପ୍ରଜାପତିର ଛିଟ ଛିଟ ଡେଣାଭଳି ଚିତ୍ରବିଚିତ୍ର । ସେଇ ଦୁନିଆରେ ମନଇଚ୍ଛା ଉଡ଼ିବୁଲିବା, ବାଲିଘର ତୋଳି ଖେଳିବା, କଣ୍ଢେଇ ବାହାଘର କରିବା ଥିଲା ଏକମାତ୍ର ଆନନ୍ଦ । ସୀମା ଦେଖିଛି, ଅନେକଥର ତା' ବାପାବୋଉଙ୍କର କଥା କଟାକଟି ହୋଇଛି । ବୋଉ ରାତି ରାତି ଲୁଚେଇ ଲୁଚେଇ କାନ୍ଦିଛି । ବାପା ଚାକିରି ଜାଗାରେ ମଉଜମଜଲିସ୍‌ରେ ଦିନ କାଟୁଥିଲାବେଳେ ବୋଉ ଗାଆଁରେ ପାଞ୍ଚଟି ପିଲାଙ୍କୁ ନେଇ ଦହଗଞ୍ଜରେ ଦିନ କାଟିଛି । ପିନ୍ଧିବାକୁ ଖଣ୍ଡେ ଭଲ ଲୁଗା ବି ପାଇନି । ବାପା ବୋଉକୁ ସବୁବେଳେ ଆକ୍ଷେପ କରୁଥିଲେ, "ମଫସଲିଟାଏ ! ଖାଲି ଗଧ ଭଳି ଖଟିବା, ଖାଇବା ଆଉ ଘରକରଣା ଜାଣିଛି । ନିହାତି ଅପଦାର୍ଥ । ୟା'କୁ ବାହା ହେଇ ଜୀବନଟା ନଷ୍ଟ ହୋଇଗଲା !" ସତରେ କ'ଣ ବୋଉ ଅପଦାର୍ଥ ଥିଲା ? ତା' ମନର କଥା ଓ ବ୍ୟଥା ବୁଝିବାର ବୟସ ସୀମାର ହେଇ ନ ଥିଲେ ବି ବୋଉର ଆଖିର ଲୁହ ଓ ଅମାପ ନୀରବତା ସୀମା ମନରେ ଦୁଃଖ ସଂଚାର କରେ । ମନେ ମନେ କହେ--- ଆହା ! ମୋ ବୋଉଟା କେତେ ଦୁଃଖୀ ସତେ !

ଆଜି ଏତେଦିନ ପରେ ସୀମା ବୁଝିପାରିଛି ତା' ବୋଉ ମଫସଲି ନ ଥିଲା କି ଅପଦାର୍ଥ ନ ଥିଲା । ସାରାଜୀବନ ବାପାଙ୍କର ଅବହେଳା ଓ ଅପମାନ ସହି ସେ ନିଜକୁ ପଥର କରିଦେଇଥିଲା । ତା' ଜୀବନରେ କ'ଣ ପାଇଲା ବୋଉ ?

କେତେ ଆଶା, କେତେ ସ୍ୱପ୍ନ ନେଇ ବାପାଙ୍କ ହାତ ଧରିଥିଲା କ'ଣ ପାହାଡ଼ ଭଳି ସ୍ପର୍ଶହୀନ ଆଉ ନିର୍ଜୀବ ପାଲଟିଯିବାକୁ ।

ସୀମା ଜୀବନରେ ତା' ବୋଉ ଜୀବନର ପୁନରାବୃତ୍ତି ଘଟିଥିଲା । ସୀମା ବି ଦିନେ ସାଗରର ହାତଧରି ବଧୂବେଶ ସାଜି ଆସିବାବେଳେ ମନ ଭିତରେ ଅନେକ ଆଶା ଓ ସ୍ୱପ୍ନକୁ ସାଇତି ରଖିଥିଲା । ନିଜ ମନର ପବିତ୍ରତା, ସରଳତା ଓ ବିଶ୍ୱାସକୁ ନେଇ ତା' ସଂସାରର ମଜ୍‌ବୁତ୍ କରିଥିଲା । ସୀମା ଚାହିଁଥିଲା ପତ୍ନୀ ଓ ନାରୀର ସୀମା ଭିତରେ ରହି କୁଳବଧୂର କର୍ତ୍ତବ୍ୟ କରିବାକୁ । ପତିପତ୍ନୀର ସଂପର୍କ ଭିତରେ ଭଲପାଇବା ଓ ବିଶ୍ୱାସର ଦୃଢ଼ତା ଥିଲା ତା'ର କାମ୍ୟ; କିନ୍ତୁ ପାଇଲା କ'ଣ ? ସାଗର ଜଣେ I.A.S. ଅଫିସର୍ । ସେ ନିଜେ ହିଁ ଅନେକଙ୍କ ଭିତରୁ ସୀମାକୁ ପସନ୍ଦ କରିଥିଲେ । ବାସରରାତିରେ ସାଗର ମାତ୍ରାଧିକ ମଦ୍ୟପାନ କରି ଟଳି ଟଳି ଆସି ବିଛଣା ଉପରେ ଏକରକମ ପଡ଼ିଯାଇଥିଲେ । ଜୀବନର ପ୍ରଥମ ମଧୁର ମୁହୂର୍ତ୍ତଟିକୁ ସୀମା ଲୁହରେ ଭସେଇ ଦେଇଥିଲା । ପରଦିନ ନିଜକୁ ଲଜ୍ଜିତ ମନେକଲା ଭଳି ସାଗର କହିଲେ, " I am really very sorry ସୀମା ! କାଲି ସାଙ୍ଗମାନେ ମତେ ଜବରଦସ୍ତ ପିଆଇଦେଇଥିଲେ ।" ସୀମା ସାଗରଙ୍କ କଥାକୁ ସତ ଭାବିଥିଲା; କିନ୍ତୁ ସେ ନିଜେ ଅନୁଭବ କରିଥିଲା ଯେ, ସାଗର ତାକୁ ମିଛ କହିଛନ୍ତି । ପ୍ରତିଦିନ ପିଇବା ତାଙ୍କର ଅଭ୍ୟାସ ଆଉ ଏ ସବୁ ତାଙ୍କ ପଦମର୍ଯ୍ୟାଦାର ଅଂଶବିଶେଷ, ଆଧୁନିକତାର ଅଂଶବିଶେଷ ବୋଲି ସାଗର କହିଥିଲେ । ସେଦିନ ସୀମାର ତା' ବୋଉ କଥା ମନେପଡ଼ିଯାଇଥିଲା । ସୀମା ଭାବିଲା ତା' ବୋଉ ଭଳି ତାକୁ ମଧ୍ୟ ନିଜ ଲୁହ ନିଜେ ପିଇ ବଞ୍ଚିବାକୁ ହେବ । ମନଟା କ୍ଷତବିକ୍ଷତ ହୋଇ ଲହୁଲୁହାଣ ହେଲେ ବି ସେ କ୍ଷତରେ ଯନ୍ତ୍ରଣାକୁ କାହା ଆଗରେ ପ୍ରକାଶ କରିହେବନି । ବିଶେଷତଃ ତା' ବୋଉ ପାଇଁ, କାରଣ ତା' ବୋଉ ଜାଣେ ସୀମା ସାଗରକୁ ପାଇ ବହୁତ ସୁଖୀ ।

ବିବାହ ପରେ ସୀମା ସାଗରଙ୍କ ସହିତ ଦେଶର ବିଭିନ୍ନ ସ୍ଥାନରେ ରହିଛି ଓ ବୁଲିଛି ; କିନ୍ତୁ ସୁଖ ପାଇବା ପରିବର୍ତ୍ତେ ଦୁଃଖ ହିଁ ପାଇଛି, କାରଣ ସେ ସାଗରଙ୍କ

ସହିତ ନିଜକୁ ଖାପ୍‌ଖୁଆଇ ଚଳେଇପାରିନି । ସାଗର ଚାହୁଁଥିଲେ ଉଗ୍ର ଆଧୁନିକା ଝିଅଟିଏ, ଯିଏ ପାର୍ଟି, ପିକ୍‌ନିକ୍‌ରେ ତାଙ୍କ ସହିତ ସୁରାପାନ କରି ଅନ୍ୟପୁରୁଷଙ୍କ ସହିତ ବାହୁରେ ବାହୁ ଛନ୍ଦି ନାଚିପାରିବ । ନଗ୍ନପୋଷାକ ପିନ୍ଧି ରୂପ-ଯୌବନର ଆକର୍ଷଣ ସୃଷ୍ଟି କରିପାରୁଥିବ । ବାହାଘରର ପାଞ୍ଚ ବର୍ଷ ଭିତରେ ତା' କୋଳକୁ ଆସିଥିଲେ ପ୍ରତୀକ୍ଷା ଓ ପୌରୁଷ । ପିଲାଦୁଇଟିଙ୍କ ପ୍ରତି ସାଗରଙ୍କର ଟିକେ ବି ସ୍ନେହଶ୍ରଦ୍ଧା କି ଆକର୍ଷଣ ନ ଥିଲା । ସାଗର ରାତି ରାତି ବାହାରେ ବିତଉଥିଲେ ଆଉ ଯେଉଁଦିନ ରାତ୍ରିର ବିଳମ୍ବିତ ପ୍ରହରରେ ଘରକୁ ଫେରନ୍ତି, ତାଙ୍କ ବାହୁବନ୍ଧନରେ ଥାଏ କେଉଁ ସୁନ୍ଦରୀ ଯୁବତୀ । ସୀମା ସବୁ ଦେଖି ଛାତିକୁ ପଥର କରିଦିଏ ।

ସୀମା ଚାହିଁଥିଲା ତା'ର ସେଇ ଛୋଟିଆ ସଂସାରରେ ସ୍ୱର୍ଗଟିଏ ଗଢ଼ିବାକୁ । ପରସ୍ପରର ସ୍ନେହ-ପ୍ରେମ-ସାଗରରେ ହଜିଯିବାକୁ । ତାଙ୍କ ଘରପାଖର ଭଙ୍ଗା କୁଡ଼ିଆ ଘରେ ରହୁଥିବା ରାମ୍‌ଲୁ ରିକ୍ସାବାଲାର ସଂସାରକୁ ଦେଖେ ସୀମା । କେତେ ସ୍ନେହ, କେତେ ନିବିଡ଼ତା ସେଇ ଅଭାବୀ ସଂସାରରେ ! ସବୁ ଦୁଃଖ, ଭୋକଉପାସ ସହି ସେମାନେ ହସି ହସି ଝଡ଼ଝଞ୍ଜାକୁ ସାମ୍‌ନା କରୁଛନ୍ତି । ଜୀବନକୁ ଜୀବନ ଭଳି ଉପଭୋଗ କରୁଛନ୍ତି ।  ତା' ଆଖିରେ ଲୁହ ଆସେ । ସେ ଭାବେ ବିଳାସପୂର୍ଣ୍ଣ ଏଇ ଅଟ୍ଟାଳିକାର ଭିତରଟା ମହାକାଳ ଫଳ ଭଳି ପୋଡ଼ା ଅଙ୍ଗାର । ହେଲେ, ଜହ୍ନ, ତାରା, ଦିଶୁଥିବା ବର୍ଷା ପାଣିରେ ଭିଜୁଥିବା ରାମ୍‌ଲୁର ସେଇ କୁଡ଼ିଆଘର କେତେ ସୁନ୍ଦର !

ସାଗର ସୀମାକୁ ପାଇ ସୁଖୀ ନ ଥିଲେ । ରାତି ରାତି ଧରି ବାହାରେ କଟଉଥିଲେ । ଘରେ ଯେତିକି ସମୟ ରହନ୍ତି, ଫୋନ୍‌ରେ କଥା ହେବା କିମ୍ବା ଟି.ଭି. ଦେଖିବା ଥିଲା ତାଙ୍କର କାମ । ନଚେତ୍ ଟିକେ ଟିକେ କଥାରେ ଚାକରବାକରଙ୍କ ସାମ୍‌ନାରେ ସେ ସୀମାକୁ ଗାଳିଗୁଲଜ କରନ୍ତି । ପିଲାଦୁଇଟି ଭୟରେ ତାଙ୍କ ପାଖ ପଶନ୍ତିନି । ସୀମା ପ୍ରତୀକ୍ଷା ଓ ପୌରୁଷକୁ ଛାତିରେ ଜାକିଧରି ଅନେକ କାନ୍ଦେ । ସାଗରର ଏ ଅବସ୍ଥା ପାଇଁ ସମସ୍ତେ ସୀମାକୁ ଦାୟୀ କରନ୍ତି । ହେଲେ ସୀମାର ମନକଥା କେହି ବୁଝନ୍ତି ନାହିଁ । ନିଜର ଅଧିକାର ଜାହିର୍ କରିବାର, ଅନ୍ୟାୟର

ପ୍ରତିବାଦ କରିବାର ଯଥେଷ୍ଟ ଶକ୍ତି ଥିଲେ ବି ସୀମା ନୀରବ ରହେ । ତା' ଅତୀତ ତାକୁ ଡରାଏ । ବାପା ଓ ବୋଉଙ୍କର ମନାନ୍ତର ଓ ମତାନ୍ତର ତା' ମନରେ.ଯେଉଁ ଦୁଃଖ ଓ ଭୟର ସଞ୍ଚାର କରିଥିଲା, ତାହା ପ୍ରତୀକ୍ଷା ଓ ପୌରୁଷଙ୍କ ଜୀବନରେ ନ ଘଟୁ, ଏ କଥା ସୀମା ଚାହେଁ । ବୟସ ବଢ଼ିଲେ ସେ ଦୁହେଁ ସବୁ ବୁଝିପାରିବେ । ସବୁ ସହିପାରିବେ । ପ୍ରତୀକ୍ଷା ଓ ପୌରୁଷ ପାଇଁ ସୀମା ତା' ବୋଉ ଭଳି ପଥର ପାଲଟି ଯାଇଛି ।

ନାରୀ ଜୀବନର ପୂର୍ଣ୍ଣତା ପାଇବା ପାଇଁ ସମାଜର ସବୁ ନୀତି, ନିୟମକୁ ସୀମା ମାନି ନେଇଥିଲା । ବୋଉ ଜୀବନର ପୁନରାବୃତ୍ତି ତା' ଜୀବନରେ ନ ଘଟୁ ଏ କଥା ସୀମା ଚାହିଁଥିଲା । ହେଲେ, ସମସ୍ତଙ୍କୁ ଭଲପାଇ, ଆପଣାର କରିବାର ବ୍ୟର୍ଥ ପ୍ରୟାସ କରି, ନିଜ ମନର ସକଳ ଆଶା, ବିଶ୍ୱାସ ଓ ଭରସାକୁ ହରାଇ ସେ କେବଳ ମୁଠାଏ ଶୂନ୍ୟତାକୁ ହିଁ ଜାବୋଡ଼ି ଧରିଛି । ତା' ସଂସାରର ଦିଗହଜା ନୌକାକୁ ଏ ଶୂନ୍ୟତା ଯେଉଁଆଡ଼କୁ ଭସେଇନେବ, ସେ ଆଡ଼କୁ ଭାସିଯିବ ସୀମା । ପ୍ରତୀକ୍ଷା ଓ ପୌରୁଷକୁ ଛାତିରେ ଯାକିଧରି ସୀମା ଘରର ଏରୁଣ୍ଡିବନ୍ଧ ସେପଟକୁ ପାଦ ପକାଇଲା । ଏଣିକି ତାକୁ ଏକା ସଂସାର-ପଥରେ ବାଟ ଚାଲିବାକୁ ହେବ । ପଛରେ ରହିଗଲା ତା'ର ଘରକରଣାର ଅଜସ୍ର ଶୂନ୍ୟତା ! ନାରୀ ଓ ପତ୍ନୀର ଭୂମିକା, ମହତ୍ତ୍ୱକୁ ସାଗର ସିନା ବୁଝିଲେନି; ହେଲେ ମାଆ ମନର ବ୍ୟାକୁଳତା ଓ ଦରଦକୁ ପୌରୁଷ ଓ ପ୍ରତୀକ୍ଷା ତ ବୁଝିବେ !





# ବନ୍ଧ ଦରଜା

ଲେଖକ ବା କବିଟିଏ ହେଲେ ପ୍ରେମିକଟିଏ ହେବାକୁ ପଡ଼େ। ସେ ପ୍ରେମ ନୈସର୍ଗିକ, ଶାଶ୍ୱତ ଓ ଦେହାତୀତ। ସେଠି ନ ଥାଏ ଦେହର ଭୋକ, ଯୌବନର ଆକର୍ଷଣ, ରୂପର ଆବାହନ କି ସଂସାରର ସୁନେଲି ସ୍ୱପ୍ନ। ମନର ଭୋକ କ୍ଷୁଧାର୍ତ୍ତ କରେ କବିର ମନକୁ। କବିତାର ଆକର୍ଷଣ ପାଗଳ କରେ କବିକୁ। ସେ ଧାଉଁଥାଏ.... ଅନବରତ ଧାଉଁଥାଏ କଳ୍ପନା ପଛରେ। କି ଦିନ, କି ରାତି, ହସଲୁହ, ସୁଖଦୁଃଖ.... ସବୁବେଳେ ପାଖେ ପାଖେ ଥାଏ ପ୍ରିୟତମା କବିତା। ମନର ବନ୍ଧଦରଜା ଭିତରେ ଥାଇ ଲୁଚିଛପି ଉସ୍‌କାଏ କବିକୁ। ଜହ୍ନ, ତାରା, ନଦୀ, ଝରଣା ପ୍ରକୃତିର ଅପାଶୋରା ସୌନ୍ଦର୍ଯ୍ୟ ଆଉ ମଣିଷକୁ ଭଲପାଇ ବସେ କବି। କବିତା ହିଁ ତା'ର ସଂସାର। କବିତା ହିଁ ତା'ର ପ୍ରିୟ ପରିଜନ। କବିତା ହିଁ ତା'ର ମାନସୀ, ପ୍ରେୟସୀ ସବୁକିଛି। ଏକାନ୍ତରେ... ନିଃସଙ୍ଗ ମୁହୂର୍ତ୍ତରେ କବି ଖୋଲିବସେ ତା' ମନର ବନ୍ଧ ଦରଜାକୁ, ପ୍ରେୟସୀ କବିତା ସହିତ ଦୁଇପଦ ସୁଖଦୁଃଖ ହେବାକୁ। କାଗଜ କଲମରେ ପ୍ରେୟସୀର ସ୍ମୃତିକୁ ଲିପିବଦ୍ଧ କରିବାକୁ। ହେଲେ ଦୁନିଆ କବିର ମନକୁ ବୁଝେନା। ତା' ମନର ବନ୍ଧ ଦରଜା ଦୁନିଆ ଆଖିରେ ସନ୍ଦେହର ନିଆଁ ଜାଳେ ଆଉ ସେଇ ସନ୍ଦେହ କବିର ନିଷ୍ପାପ ସରଳ ପ୍ରେମକୁ

ଜାଳିଦିଏ । ଜାଳିଦିଏ ସଂପର୍କହୀନ ସଂପର୍କକୁ, ନିଷ୍କପଟ, ନିଃସ୍ୱାର୍ଥ, ନିଃସର୍ତ୍ତ ଭଲପାଇବାକୁ ।

ବିଦଗ୍‌ଧ କବି, ସୁଲେଖକ ପ୍ରଶାନ୍ତ ଦାସ ଦୀର୍ଘ ବାର ବର୍ଷର ଦାମ୍ପତ୍ୟଜୀବନ ଅତିବାହିତ କରିବା ପରେ ତାଙ୍କର ପତ୍ନୀ ଶିଳ୍ପାଦେବୀଙ୍କୁ ଏ କଥା ବୁଝେଇପାରି ନାହାନ୍ତି । ଶିଳ୍ପା ସବୁ ଜାଣି ଅବୁଝା ହୁଅନ୍ତି । ତାଙ୍କ ସୁଣଖିଆ ମନ ସ୍ୱାମୀଙ୍କୁ ସନ୍ଦେହ କରିବସେ । ଶିଳ୍ପା ଭାବନ୍ତି ପ୍ରଶାନ୍ତ ନିଶ୍ଚୟ ବିବାହ ପୂର୍ବରୁ ଆଉ କାହାକୁ ଭଲପାଉଥିଲେ । ଏବେ ହୁଏତ କେଉଁ ସୁନ୍ଦରୀ ଯୁବତୀକୁ ପ୍ରେମ କରୁଛନ୍ତି । ନ ହେଲେ ଏ ବୟସରେ ତାଙ୍କ ଗଳ୍ପ, କବିତାରେ ଏତେ ଉଦାମତା, ପ୍ରେମର ଏତେ ସୁନ୍ଦର କଳ୍ପନା ଆସନ୍ତା କୁଆଡୁ ! ବିବାହ୍ ଦିନରୁ ତାଙ୍କ ମନରେ ଥିବା ସନ୍ଦେହ ସମୟକ୍ରମେ ସୁଦୃଢ଼ ହେବାକୁ ଲାଗୁଛି , କାରଣ ତାଙ୍କ ଭଳି ସୁନ୍ଦରୀ, ସୁଗୃହିଣୀ, ଶିକ୍ଷିତା ପତ୍ନୀଟିଏ ପାଖେ ପାଖେ ଥିଲେ ମଧ୍ୟ ପ୍ରଶାନ୍ତ ସବୁବେଳେ ଅନ୍ୟମନସ୍କ ରୁହନ୍ତି କାହିଁକି ? ଶିଳ୍ପାଙ୍କ ମନ କେତେ ଆଉଟୁପାଉଟୁ ହୁଏ ସ୍ୱାମୀଙ୍କ ମୁହଁରେ ନିଜର ପ୍ରଶଂସା ଶୁଣିବାକୁ; ହେଲେ ତାଙ୍କର ଏ ଆଶା କେବଳ ଆଶାରେ ହିଁ ରହିଯାଇଛି । ପ୍ରଶାନ୍ତ ସତେ ଯେମିତି ନିର୍ଲିପ୍ତ, ନିର୍ବିକାର ଯୋଗୀଟିଏ, ମନ୍ତ୍ରମୁଗ୍‌ଧ ସଂସାରତ୍ୟାଗୀ ପୁରୁଷଟିଏ, ଯାହାର ଧ୍ୟାନଭଗ୍ନ କରିବାକୁ ଶିଳ୍ପାନାମ୍ନୀ ସୁନ୍ଦରୀ କିନ୍ନରୀ ବାରବର୍ଷ ଧରି ବ୍ୟର୍ଥପ୍ରୟାସ କରି ଚାଲିଛନ୍ତି ।

ପ୍ରଶାନ୍ତଙ୍କର ପ୍ରଶଂସକ/ପ୍ରଶଂସିକାଙ୍କ ସଂଖ୍ୟା ଢେର୍ ବେଶି । ପ୍ରତିଦିନ ପ୍ରଶଂସାପୂର୍ଣ୍ଣ ଆଠଦଶଟି ଚିଠି ନିଶ୍ଚୟ ଆସେ । ଶିଳ୍ପା ସବୁଚିଠିକୁ ଟିକିନିଖି ପଢ଼ନ୍ତି । ପ୍ରଶଂସିକାମାନଙ୍କର ଚିଠି ପଢ଼ି ମନେ ମନେ ରାଗନ୍ତି । ଭାବନ୍ତି, ଏମାନଙ୍କର କ'ଣ କିଛି କାମ ନାହିଁ ? ପରପୁରୁଷକୁ ପ୍ରଶଂସା କରିବା ଆଳରେ ଚିଠି ଲେଖି ନିକଟତର ହେବା ଏମାନଙ୍କର ଅଭ୍ୟାସ । କେତେଥର ଭାବିଛନ୍ତି ଏ ବିଷୟରେ ପ୍ରଶାନ୍ତଙ୍କୁ କହିବେ । ହେଲେ ସାହସ କରିପାରିନାହାନ୍ତି । ଶିଳ୍ପା ଭାବନ୍ତି ସେ ପ୍ରଶାନ୍ତଙ୍କୁ ସନ୍ଦେହ କରି ଭୁଲ୍ କରୁନାହାନ୍ତି ତ ! ନା, ନା ତାଙ୍କ ସ୍ୱାମୀ ଦେବତା ଭଳି ପବିତ୍ର । ଓଡ଼ିଶାର ଜଣେ ଲବ୍‌ଧପ୍ରତିଷ୍ଠ ଲେଖକ । ତାଙ୍କ ସ୍ତ୍ରୀ ହିସାବରେ ତାଙ୍କର ଗର୍ବ କରିବା କଥା ।

ତାଙ୍କ ସ୍ୱାମୀଙ୍କ ଲେଖା ପଢ଼ିବାକୁ କେତେ ପାଠକ ପାଗଳ ହେଉଛନ୍ତି । ଏହା ତ ଗର୍ବର କଥା । ହେଲେ ଶିଳ୍ପା ଏତେଟା ଉଦାରମନା ହେଇପାରନ୍ତିନି । ପ୍ରଶଂସିକାଙ୍କ ଚିଠି ଭିତରେ ଚନ୍ଦନା ନାମ୍ନୀ ଝିଅଟିର ଚିଠି ତାଙ୍କୁ ବେଶି ବିବ୍ରତ କରେ । ସନ୍ଦେହର କୁହୁଡ଼ି ଭିତରକୁ ଟାଣିନିଏ । ପ୍ରାୟେ ବର୍ଷେ ହେବ ଏଇ ଝିଅର ଚିଠି ମାସକୁ ୩/ ୪ ଖଣ୍ଡ ନିଶ୍ଚୟ ଆସୁଛି ଆଉ ସେଇ ଚିଠିର ଭାଷା ଶିଳ୍ପାଙ୍କୁ ବେଶି ବିବ୍ରତ କରିଛି ।

ଚନ୍ଦନାର ପ୍ରତ୍ୟେକ ଚିଠିର ଭାବ ଓ ଭାଷା ଏମିତି.... "ହେ ମୋର ବିଦଗ୍ଧ କବି ! ତୁମ କବିତା ମୋ ଜୀବନରେ ବଞ୍ଚିବାର ଖୋରାକ ଯୋଗାଇଦେଇଛି । ତୁମକୁ ମୁଁ ଏତେ ଭଲପାଇ ବସିଛି ଯେ, ମୋ ଜୀବନକୁ ବି ମୁଁ ଏତେ ଭଲପାଇନି । ତୁମ ସହିତ ମୋର ସମ୍ପର୍କ ଆହୁରି ନିବିଡ଼ ହେଉ..... ତୁମେ ମତେ ଏମିତି ସୁନ୍ଦର ସୁନ୍ଦର କବିତା ଉପହାର ଦେଉଥାଅ ମୋର ମୃତ୍ୟୁ ପର୍ଯ୍ୟନ୍ତ.....।" ଶିଳ୍ପା ମନେ ମନେ ବହୁତ ରାଗନ୍ତି, ଅଭିମାନ କରନ୍ତି; କିନ୍ତୁ ପ୍ରଶାନ୍ତଙ୍କର ସେ ଆଡ଼କୁ ନଜର ନ ଥାଏ । ସେ ସବୁଦିନେ ସାଗର ଭଳି ନିର୍ବିକାର, ପ୍ରଶାନ୍ତ ଓ ସ୍ଥିର । ଶିଳ୍ପାଙ୍କ ସବୁ ରାଗ, ଅଭିମାନ ମନ ଭିତରେ ରହିଯାଏ । ମୁହଁ ଖୋଲି କିଛି କହିପାରନ୍ତିନି କି ମନ ଭିତରେ ଏ କଥାକୁ ସହଜରେ ଗ୍ରହଣ କରିପାରନ୍ତିନି ।

ଏଇ କେତେଦିନ ହେବ ଶିଳ୍ପା ଲକ୍ଷ୍ୟ କରୁଛନ୍ତି ପ୍ରଶାନ୍ତ କେମିତି ଅତିବେଶୀ ଅନ୍ୟମନସ୍କ ଓ ବିବ୍ରତ ଜଣାପଡୁଛନ୍ତି । ଖାଇବା, ପିଇବାର ଠିକ୍‌ଠିକଣା ନାହିଁ । ସକାଳୁ ସକାଳୁ କୁଆଡ଼େ ଚାଲିଯାଉଛନ୍ତି । ବିଳମ୍ବିତ ରାତ୍ରିରେ ଫେରୁଛନ୍ତି । କ'ଣ ହେଇଛି, ପଚାରିଲେ ଶୁଖିଲା ହସ ଟିକେ ହସି କହନ୍ତି--- "କିଛିନାହିଁ ଶିଳ୍ପା ! ମୋର ଜଣେ ଅତି ଆପଣାର ଲୋକ ଭୀଷଣ ଅସୁସ୍ଥ ଅଛି । ସେଇଥିପାଇଁ ମନଟା ଭଲ ନାହିଁ ।"

କାଲି ରାତିରେ ପ୍ରଶାନ୍ତ ଘରକୁ ଫେରିଲା ପରେ ତାଙ୍କ ମୁହଁଟା କେମିତି କାନ୍ଦ କାନ୍ଦ ଦିଶୁଥିଲା । ଶିଳ୍ପାକୁ ପଦେ କିଛି ନ କହି ପଢ଼ାଘରେ ବସି କ'ଣ ଲେଖିବାକୁ ଲାଗିଲେ । ତାଙ୍କୁ ଅପେକ୍ଷା କରି କରି ଶିଳ୍ପା ଶୋଇଗଲେ । ଶିଳ୍ପା ଭାବୁଥିଲେ ପ୍ରଶାନ୍ତଙ୍କର ଏତେ ନିଜର ଆଉ କିଏ ଅଛି, ଏ କଥା ତାଙ୍କୁ ଜଣାନାହିଁ , କାରଣ

ସେ ବାପାମାଆଙ୍କର ଏକମାତ୍ର ସନ୍ତାନ। ପାଞ୍ଚବର୍ଷ ତଳେ ବାପାମାଆଙ୍କର ଦେହାନ୍ତ ହୋଇଯାଇଛି। ଲେଖାଯୋଖା ବନ୍ଧୁବାନ୍ଧବ କେଇଜଣ ଅଛନ୍ତି ! ଏମିତି ବିବାହବ୍ରତରେ ଯାହାଟିକେ ଦେଖାସାକ୍ଷାତ ହୁଏ।

ସକାଳୁ ଉଠି ଶିଲ୍ପା ଦେଖିଲେ ଯେ ପ୍ରଶାନ୍ତ ଘରେ ନାହାନ୍ତି। ବ୍ୟସ୍ତ ହୋଇପଡ଼ିଲେ ଶିଲ୍ପା। କାହାକୁ ପଚାରିବେ ? ଏତିକିବେଳେ ଟେଲିଫୋନ୍ ବାଜିଉଠିଲା। ଟେଲିଫୋନ୍ ଉଠାଇଲେ ଶିଳ୍ପା। ସେପଟରୁ ଝିଅଟିଏ କହିଲା, "ପପୁଲାର୍ ନର୍ସିଂହୋମ୍‌ରୁ କହୁଛି। ପ୍ରଶାନ୍ତବାବୁଙ୍କୁ ଶୀଘ୍ର ନର୍ସିଂହୋମ୍‌ରେ ପହଞ୍ଚିବାକୁ କହିବେ। ଚନ୍ଦନା ଦେହ ଅତି serious।" ଶିଳ୍ପା ଚମକିପଡ଼ିଲେ। ଦୁନିଆଟା ତାଙ୍କୁ ତାଙ୍କୁ ଅଚିହ୍ନା ଲାଗିଲା। ତାଙ୍କ ସନ୍ଦେହ ତା'ହେଲେ ସତ ! ଶିଳ୍ପା ନିଜକୁ ସମ୍ଭାଳିପାରିଲେନି। ମନେ ମନେ ଭାବିଲେ ଆଜି ଏହାର ଗୋଟାଏ ସମାଧାନ କରିବାକୁ ହେବ। ତରତର ହୋଇ ରିକ୍ସାଟାଏ ଡାକି ନର୍ସିଂହୋମ୍‌କୁ ବାହାରିଗଲେ।

ରିସେପସନିଷ୍ଟ୍‌କୁ ପଚାରି ଚନ୍ଦନା ମହାପାତ୍ର ରହୁଥିବା କ୍ୟାବିନ୍ ନିକଟରେ ଶିଳ୍ପା ପହଞ୍ଚିଗଲେ। ଦୁଆର ମୁହଁରେ ନୀଳରଙ୍ଗର ପର୍ଦ୍ଦାଟାଏ ଝୁଲୁଛି। ଭିତରକୁ ଯିବାକୁ ଉଦ୍ୟତ ହେଉଚନ୍ତି, ପ୍ରଶାନ୍ତଙ୍କ କଥା ଶୁଭିଗଲା। ପ୍ରଶାନ୍ତ ତାଙ୍କର ଅତି ପ୍ରିୟ୍ କବିତାଟିକୁ ଆବେଗପୂର୍ଣ୍ଣ କଣ୍ଠରେ ଆବୃତ୍ତି କରୁଥା'ନ୍ତି, "ତୁମର ଏ ନୀଳ ଆଖି, କଇଁ ନୁହେଁ, ନୀଳ ଜହ୍ନଟିଏ, ତୁମର ଏ ନାଲି ଓଠ, ଓଠ ନୁହେଁ ଗୋଲାପ ପାଖୁଡ଼ାଟିଏ, ତମ ମନ ମନ ନୁହେଁ, ମୋ କବିତାର ନିର୍ଯ୍ୟାସଟିଏ। ସେ ମନକୁ ମୁଁ ଏତେବେଶୀ ଭଲପାଏ। ତାକୁ ହରାଇବାକୁ ଭୟ୍ ଲାଗେ.... ମୋ ଆୟୁଷ କମି କମି ଆସେ... ମୋ ଜୀବନର-- ମାନେ ଶୂନ୍ୟ ପାଲଟେ...। ତମେ କଥା ଦିଅ.... ତମେ ଏମିତି ହସୁଥିବ ... ତମେ ଏମିତି ଜିଇଥିବ ମୋ ମନର ନୀଳଜହ୍ନ ହୋଇ... ମୋ ବଗିଚାର ନାଲି ଗୋଲାପ ହୋଇ।"

ଶିଳ୍ପାଙ୍କର ପାଦତଳୁ ପୃଥିବୀଟା ଖସିଯାଉଥିଲା ଯେମିତି ଆଉ ଅପେକ୍ଷା ନ କରି ରୁମ୍ ଭିତରକୁ ପଶିଗଲେ ସେ; କିନ୍ତୁ ଏ କ'ଣ ? ବେଡ୍ ଉପରେ ୧୨/୧୪ ବର୍ଷର ଜୀର୍ଣ୍ଣଶୀର୍ଣ୍ଣ ଝିଅଟିଏ ଆଖିବୁଜି ଶୋଇଛି। ପ୍ରଶାନ୍ତଙ୍କର ହାତଦୁଇଟିକୁ ନିବିଡ଼

ଭାବେ ଜଡ଼ାଇ ଧରିଛି ଆଉ ପ୍ରଶାନ୍ତ ଆଖିରୁ ଲୁହ ପୋଛି କବିତା ଆବୃତ୍ତି କରିଚାଲିଛନ୍ତି । ଶିଲ୍ପା ଭାବିଲେ ଏ ଝିଅଟିଏ କିଏ ? ଯାହା ପାଇଁ ପ୍ରଶାନ୍ତ ଏତେ ଅଧୀର ! ସେ ଧୀରେ ଧୀରେ ପ୍ରଶାନ୍ତଙ୍କ ପଛପଟେ ଛିଡ଼ାହେଇ ତାଙ୍କ କାନ୍ଧରେ ହାତ ରଖିଲେ । ପଛକୁ ବୁଲି ଚାହିଁଲେ ପ୍ରଶାନ୍ତ । ତାଙ୍କର କୋହ ଦ୍ୱିଗୁଣ ହେଲା । ଶିଲ୍ପାଙ୍କୁ ଚାହିଁ କହିଲେ-- "ହଁ ଶିଲ୍ପା ! ଏଇ ମୋର ଚନ୍ଦନା, ଯାହା ପାଇଁ ତମେ ମତେ ସନ୍ଦେହ କରୁଛ । ମୋ ଭଲପାଇବାକୁ ଅବିଶ୍ୱାସ କରୁଛ । ପତିପତ୍ନୀର ସାତଗଣ୍ଠିପକା ବନ୍ଧନକୁ ଏତେ ଦୁର୍ବଳ ଭାବୁଛ । ଇଏ ସେଇ ଚନ୍ଦନା । ମୋ ମନର ବନ୍ଦ ଦରଜାରେ ମୁଁ ତାକୁ ଦୀର୍ଘଦିନ ଧରି ଲୁଚାଇ ରଖିଛି । କାହିଁକି ଜାଣିଛ ?"

ପ୍ରଶାନ୍ତ ବାଚାଳଙ୍କ ଭଳି ଗପି ଚାଲିଥିଲେ, "ଗତବର୍ଷ ଢେଙ୍କାନାଳଠାରେ ଅନୁଷ୍ଠିତ ରାଜ୍ୟସ୍ତରୀୟ କବି ସମ୍ମିଳନୀରେ ମୁଁ ଯୋଗ ଦେବାକୁ ଯାଇଥିଲି । ସେଇଠି ମୋର ଚନ୍ଦନା ସହିତ ସାକ୍ଷାତ ହୋଇଥିଲା । କବି ସମ୍ମିଳନୀରେ ମୋ'ରି କବିତାକୁ ଚନ୍ଦନା ଖୁବ୍ ଭଲଭାବରେ ଆବୃତ୍ତି କରିଥିଲା । ମୋ ପରିଚୟ ପାଇବା ପରେ ସେ ଏତେ ଖୁସି ହେଇଗଲା ଯେ, ସତେ ଯେମିତି ତା'ର ଅତି ପ୍ରିୟ ପଦାର୍ଥକୁ ପାଇପାରିଛି । ଜାଣିଛ ଶିଳ୍ପା ! ଚନ୍ଦନା ଏ ଦୁନିଆରେ ଏକା । ମହାବାତ୍ୟାରେ ଚନ୍ଦନା ତା'ର ବାପାମାଆ, ବନ୍ଧୁ, ଆତ୍ମୀୟସ୍ୱଜନ ସମସ୍ତଙ୍କୁ ହରାଇବା ପରେ ଢେଙ୍କାନାଳର ଅନାଥାଶ୍ରମରେ ରହୁଥିଲା । ସେ ମୋ କବିତାର ପୂଜାରିଣୀ ଥିଲା । ସେ ମତେ କହିଥିଲା – ମୁଁ ଆପଣଙ୍କ କବିତାର ଅର୍ଥ ସିନା ବୁଝେନି; କିନ୍ତୁ ଆପଣଙ୍କ କବିତା ପଢ଼ିବାକୁ ମତେ ବହୁତ ଭଲଲାଗେ । ପ୍ରତି ମୁହୂର୍ତ୍ତରେ ଆପଣଙ୍କୁ ଦେଖିବାକୁ ମୋର ଇଚ୍ଛା ହୁଏ ।

ତାକୁ ଦେଖିବା ପରେ ତା' ଦରଦୀ ଜୀବନ କାହାଣୀ ଶୁଣିବା ପରେ ତା' ପ୍ରତି ମୋର ଆକର୍ଷଣ ସୃଷ୍ଟି ହେଲା । ମତେ ସିଏ ଅତି ନିଜର ନିଜର ଲାଗିଲା । ସେଇଦିନରୁ ମୁଁ ମୋର ପ୍ରତ୍ୟେକ କବିତା ତାକୁ ଉତ୍ସର୍ଗ କରି ଆସୁଛି । ତମେ କୁହ ଶିଲ୍ପା, ଏ ସମ୍ପର୍କ କ'ଣ ଅବୈଧ ? ଜାଣ ଶିଲ୍ପା ! ଚନ୍ଦନାକୁ blood cancer ହୋଇଥିଲା । ୬ ମାସ କାଳ ଜୀବନ ଓ ମୃତ୍ୟୁ ସହିତ ସଂଗ୍ରାମ କରି ସେ ଆଜି ନିଶ୍ଚିନ୍ତରେ ଶୋଇଯାଇଛି ଆଉ ମୁଁ ତାକୁ କବିତା ଶୁଣାଇ ଚାଲିଛି । ଭାବୁଛି ମୋ'

କବିତା ଶୁଣି ଚନ୍ଦନା ପୁଣି ପୂର୍ବଭଳି ସତେଜ ହୋଇଉଠିବ..... କରତାଳି ଦେବ। ଚନ୍ଦନା ସହିତ ମୋର ସମ୍ପର୍କ କ'ଣ ? ଲୁହର ନା ଲହୁର ? ସେ ଖାଲି ମୋ କବିତାର ଜଣେ ପ୍ରଶଂସିକା। ବିଦଗ୍‌ଧ ପାଠିକା। ଆଉ ମୁଁ ଭାବେ ଚନ୍ଦନା ହିଁ ମୋ କବିତାର ଆତ୍ମା ! ମୋ କବିତାର ଜୀବନ..... ମୋ' କବିତାର ଉତ୍ସ। ଆମ ଦୁଇଜଣଙ୍କ ଭିତରେ ଥିବା ସଂପର୍କର କୌଣସି ସଂଜ୍ଞା ନାହିଁ ! ସବୁ ସଂପର୍କର ଊର୍ଦ୍ଧ୍ୱରେ ଏ ସଂପର୍କ ଯେତିକି ନିଃସ୍ୱାର୍ଥ, ସେତିକି ନିଃସର୍ତ୍ତ ଶିଳ୍ପ !"

ଶିଳ୍ପାଙ୍କ ଆଖି ଲୁହରେ ଭିଜି ଯାଇଥିଲା। ପ୍ରଶାନ୍ତଙ୍କୁ ସନ୍ଦେହ କରି କେତେ ଭୁଲ୍ କରିଛନ୍ତି ସତେ ! ଶିଳ୍ପା ଏତେଦିନ ପରେ ବୁଝିପାରିଲେ ଗୋଟିଏ ଲେଖକ ..... ଜଣେ କବିର ଦରଦୀ ମନକୁ। କବି ବା ଲେଖକଟିଏ ସାରା ପୃଥିବୀକୁ ଭଲପାଇ ବସେ। ସେ ଭଲପାଇବାକୁ ବୁଝିବା ପାଇଁ ସମ୍ବେଦନଶୀଳ ମନଟିଏ ଦରକାର। ବିସ୍ତୃତ ହୃଦୟଟିଏ ଦରକାର। ପ୍ରଶାନ୍ତଙ୍କ ମନର-ବନ୍ଦ ଦରଜାକୁ ଆଘାତ କରି କେତେ ଭୁଲ୍ କରିଛନ୍ତି ସତେ ! ସେ କ'ଣ ଜାଣିଥିଲେ ସେଇ ବନ୍ଦ ଦରଜା ଭିତରେ ଏତେ ସ୍ୱାଭିମାନ, ଅଭିମାନ, ଦୁଃଖ ଆଉ ନିଃସଙ୍ଗତା ଭରି ରହିଛି..... !

ଚନ୍ଦନା ଦୁଇଆଖି ବନ୍ଦ କରି ପ୍ରଶାନ୍ତଙ୍କ କୋଳରେ ମୁଣ୍ଡ ରଖି ନିଶ୍ଚିନ୍ତରେ ଶୋଇଯାଇଥିଲା। ସତେ ଯେମିତି ତା'ର ତପସ୍ୟା ଶେଷ ହୋଇଯାଇଛି। ସବୁ ସୁଖ ସେ ପାଇଯାଇଛି। ପ୍ରଶାନ୍ତ ଓ ଶିଳ୍ପାଙ୍କ ଆଖିରୁ ଅଶ୍ରୁ ଝରି ଚାଲିଥିଲା।

ଶିଳ୍ପା ଏତେଦିନ ପରେ ବୁଝିପାରିଲେ ଯେ, ସେ ପ୍ରଶାନ୍ତଙ୍କର ପତ୍ନୀ ହୋଇଥାଇପାରନ୍ତି, ଉତ୍ତମ ଜୀବନସାଥୀଟିଏ ହୋଇଥାଇପାରନ୍ତି; କିନ୍ତୁ ସେ ଜଣେ କବିଙ୍କର ପ୍ରେରଣା ନୁହନ୍ତି। କବିହୃଦୟର ମହାନତା, କବିପ୍ରାଣର ଉଦ୍ଦାମତା ଓ ଉଦାରତା ବୁଝିବା ଶକ୍ତି ତାଙ୍କର କାହିଁ !



# ସ୍ୱପ୍ନଭଙ୍ଗର ପ୍ରତୀକ୍ଷା

ଝିଅଟିଏ, ଦେହଟା ତା'ର ସୁନାରଙ୍ଗର। ଆଖି ଦୁଇଟି ଗଭୀର ନୀଳହ୍ରଦ ପରି ଅନିସନ୍ଧିତ୍ସୁ। ମନଟି ତା'ର ସରଳ, ତରଳ, ଛନ୍ଦକପଟହୀନ, ନିଷ୍ପାପ। ଦେହରେ ତା'ର ଏଇମାତ୍ର ବସନ୍ତର ପହିଲି ସ୍ପର୍ଶ। ଷୋଡ଼ଶୀ କିଶୋରୀ ଆଖିରେ ନାମହୀନ ସ୍ୱପ୍ନର ଭିଡ଼। ହଠାତ୍ କ'ଣ ହେଲା କେଜାଣି, ଝିଅଟି ଭାବୁକ ପାଲଟିଗଲା। ଅପଲକ ନୟନରେ ଫୁଲ, ଗଛଲତା, ନଈ, ଝରଣା, ନୀରବ ଜନପଦକୁ ନିରେଖି ଦେଖିଲା। ରାତି ରାତି ବିନିଦ୍ର ରହି ଜହ୍ନ, ତାରା, ବର୍ଷା, ବାଦଲର ଭାଷାକୁ ପଢ଼ିଲା ଆଉ ସେମିତି ସ୍ୱପ୍ନରେ ବୁଡ଼ିରହି କାଗଜକଲମ ଧରି କ'ଣସବୁ ଲେଖିବସିଲା। ସାଙ୍ଗସାଥୀ, ଆତ୍ମୀୟସ୍ୱଜନ ଝିଅଟିର ଲେଖାକୁ ପଢ଼ିଲେ। କହିଲେ, "ବାଃ ! ଚମତ୍କାର କବିତା ଲେଖୁଛୁ ତ ! ତୁ ନିଶ୍ଚୟ ଦିନେ ବିଖ୍ୟାତ କବିଟିଏ ପାଲଟିଯିବୁ।"

ଝିଅଟି ପୁଣି ଏକ ସ୍ୱପ୍ନ ଦେଖିଲା। ସୁଦୂର... ଅନାମିକା ଭବିଷ୍ୟତର। ତା'ର ଇଚ୍ଛା ହେଲା ତା' କବିତା ଦୁନିଆ ସାରା ସମସ୍ତେ ପଢ଼ନ୍ତେ କି ! ସମସ୍ତଙ୍କର ଅଭିନନ୍ଦନ, ଶୁଭେଚ୍ଛା ଓ ପ୍ରଶଂସାର ଲମ୍ବା ଧାଡ଼ିଟିଏ ତା' ଘର ଯାଏ ଲମ୍ବିଯାଆନ୍ତା କି ! ଟିକେ ପ୍ରଶଂସା, ଟିକେ ପାର୍ଥିବ ସୁଖ, ଟିକେ ଯଶ ପାଇବା ଲାଗି ଝିଅଟି ଛଟପଟ ହେଲା।

ଦିନେ ଝିଅର ପରିଚୟ ହେଲା ସମାଜର ତଥାକଥିତ କେଇଜଣ ବିଶିଷ୍ଟ ବ୍ୟକ୍ତିଙ୍କ ସହିତ। ସେମାନେ ତାକୁ କହିଲେ, "ତମେ ଜଣେ ଆମ ଦେଶର ଲବ୍ଧପ୍ରତିଷ୍ଠ କବି ହେବାକୁ ଚାହଁ ? ତମକୁ ଦେଖିଲେ ଯେ କେହି ଜାଣିପାରିବ ଯେ ତମ ଭିତରେ ନୈସର୍ଗିକ ପ୍ରତିଭାଟାଏ ଲୁଚି ରହିଛି। ତମର କ'ଣ ଅନ୍ୟମାନଙ୍କ

ଭଳି ସାମାଜିକ ପ୍ରତିଷ୍ଠା, ଯଶ, ସମ୍ମାନ ପାଇବାକୁ ଇଚ୍ଛା ହୁଉନି ?" ଆଗ୍ରହରେ ଝିଅଟି ଉତ୍ତରଦେଲା, "ହଁ ! କିନ୍ତୁ କେମିତି ?" ସେମାନେ କହିଲେ, "ଖୁବ୍ ସହଜ । ଆମେ ତମଭଳି ଅନେକ ନୂତନ ପ୍ରତିଭାକୁ ସାମାଜିକ ସ୍ୱୀକୃତି ଦେଇଛୁ । ତମଭଳି ନାମହୀନ ଲେଖକମାନଙ୍କୁ ନାମଟିଏ ଦେଇ ସମାଜର ପ୍ରତିଷ୍ଠିତ କରାଇଛୁ । ତମେ ଯଦି ଏ ସବୁ ଚାହୁଁଥାଅ, ତେବେ ଆଜି ଆସ ଆମ 'ସ୍ୱପ୍ନ ନିଳୟ'କୁ । ତା'ପରେ ଦେଖିବ, ଆମେ ତମକୁ ଯଶର ସୁନା ମୁକୁଟଟିଏ ପିନ୍ଧାଇ ସମ୍ମାନର ଦିଗନ୍ତକୁ ନେଇଯିବୁ । ତା'ପରେ ତମେ କବିତାଜଗତର ଏକଛତ୍ର ସାମ୍ରାଜ୍ଞୀ ପାଲଟିଯିବ । ତମ ଘରେ ପାଠକ, ପ୍ରକାଶକ, ସାହିତ୍ୟିକମାନଙ୍କର ଭିଡ଼ ଜମିବ । ତମର ଫଟୋ ପତ୍ର-ପତ୍ରିକା, ଖବରକାଗଜରେ ବାହାରିବ । ଦୂରଦର୍ଶନ ଓ ରେଡିଓରେ ତମର ପ୍ରଶସ୍ତି ଗାନ କରାଯିବ । ତା'ପରେ, ତମେ ନିଜେ ନିଜକୁ ହିଁ ଚିହ୍ନିପାରିବନି । ତା'ପରେ, ଖାଲି ଖ୍ୟାତି... ଖ୍ୟାତି ..... ସମ୍ମାନ ...... ସମ୍ମାନ । ଏଇ, ଏ କାର୍ଡ୍‌ଟି ନିଅ । ଏଇ ଠିକଣାରେ ଆଜି ସନ୍ଧ୍ୟାବେଳେ 'ସ୍ୱପ୍ନ ନିଳୟ'ରେ ପହଞ୍ଚିଯିବ ।" ସେମାନେ ଚାଲିଗଲେ । କାର୍ଡ୍‌ଟାକୁ ଛାତିରେ ଚାପିଧରି ଝିଅଟି ଆନନ୍ଦରେ ନାଚିଗଲା । ଧନ-ସମ୍ମାନ-ଯଶ ପ୍ରାପ୍ତିର କାମନା ମାନବର ସହଜାତ ପ୍ରବୃତ୍ତି । ଝିଅଟି ତ ସେଇଆ ଚାହୁଁଥିଲା ! ଏତେ ସହଜରେ ଏ ସବୁ ମିଳିଯିବାର ଆନନ୍ଦକୁ ସେ ବିଶ୍ୱାସ କରିପାରୁ ନ ଥିଲା ।

ସଂଜ ହେଲା । ସ୍ୱରଚିତ କବିତାଟିଏ ଧରି ଝିଅଟି ଖୁବ୍ ଆଗ୍ରହରେ 'ସ୍ୱପ୍ନ ନିଳୟ'ରେ ପାଦ ଦେଲା । ରଂଗିନ୍ ଆଲୋକର ରୋଶଣିରେ 'ସ୍ୱପ୍ନ ନିଳୟ' ସତରେ ଏକ ସ୍ୱପ୍ନ ପରି ଲାଗୁଥିଲା । ସ୍ୱପ୍ନ ନିଳୟ ପାହାଚରେ ପାଦ ଥୋଇ ଝିଅଟି କିଛିକ୍ଷଣ ପାଇଁ ଆତ୍ମବିସ୍ମୃତ ହୋଇପଡ଼ିଲା । ଏଇ ତା'ର ଭବିଷ୍ୟତର ପ୍ରଥମ ସୋପାନ । ଏଇ ତା'ର ଆତ୍ମପ୍ରତ୍ୟୟର ନିରୋଳା ମୁହୂର୍ତ୍ତ । ଦରଜା ଡେଇଁ ସ୍ୱପ୍ନ ନିଳୟ ଭିତରେ ପ୍ରବେଶ କରି ଝିଅଟି ଚକିତ ହୋଇଗଲା । ବିରାଟ ଏକ ପ୍ରକୋଷ୍ଠ । ଗାଢ଼ନୀଳ ଆଲୋକରେ ପ୍ରକୋଷ୍ଠଟି ସତେ କି ସୁନୀଳ ସାଗରଟିଏ ପାଲଟି ଯାଇଛି । ଅନ୍ୟ କିଛି ଭାବିବା ପୂର୍ବରୁ ସେଇ ଚାରିଜଣ ଅପରିଚିତ ବ୍ୟକ୍ତି ତାକୁ ଅଭିବାଦନ ଜଣେଇ ଆଗେଇ ଆସିଲେ । ସେମାନଙ୍କ ହାତରେ ଥିଲା ବିଦେଶୀ ପାନୀୟ । ଝିଅଟି

ଆଶ୍ଚର୍ଯ୍ୟରେ କହିଲା, "ଏ କ'ଣ ? ଆଜି ପରା ଏଠି କବି ସମ୍ମିଳନୀ ହେବାର ଥିଲା ? କିନ୍ତୁ କେହି କୁଆଡ଼େ ତ ନାହାନ୍ତି ?"

ସେମାନେ ହସିଲେ । "ଓହୋ ! ଆମେ ପରା ଅଛୁ । ଆମେ ହିଁ ତମ କବିତା ଶୁଣିବୁ । ତମ କଳ୍ପନାର ଅଭିବ୍ୟକ୍ତିକୁ ବାସ୍ତବତାର ରୂପ ଦେବୁ ।"

ଝିଅଟି ଟିକେ ଭୟ ପାଇଗଲା । ତା' ସରଳ ମନରେ କିଛି ପଶୁ ନ ଥିଲା । ସେମାନେ ତାକୁ ଚାରିପଟୁ ବେଢ଼ିଯାଇଥିଲେ । ସେମାନଙ୍କର ହସ ଓ ଚାହାଣୀରେ ଝିଅଟି କେମିତି ଏକ ଭିନ୍ନ ଭାବ ଦେଖିବାକୁ ପାଇଲା ।

ପ୍ରଥମ ଜଣକ କହିଲେ, "ମତେ ତମେ ଚିହ୍ନିଛ ? ମୁଁ ଜଣେ ବିଶିଷ୍ଟ ସମାଜସେବୀ । ମୁଁ ସୁପାରିଶ୍ କରିବି ଯେ, ତମ କବିତା ସମାଜ-ଗଠନମୂଳକ ଭିନ୍ନ ସ୍ୱାଦର କବିତା ।"

ଦ୍ୱିତୀୟ ଜଣକ କହିଲେ, "ମୁଁ ଆମ ରାଜ୍ୟର ଶାସନ ବିଭାଗର ଜଣେ ବରିଷ୍ଠ କର୍ମଚାରୀ । ମୁଁ ସୁପାରିଶ୍ କରିବି ଯେ, ତମ କବିତାରେ ସୁଦୃଢ଼ ମାନିବକ ମୂଲ୍ୟବୋଧ ସ୍ପଷ୍ଟ ଚିତ୍ରିତ ।"

ତୃତୀୟ ଜଣକ କହିଲା, "ମୁଁ ଜଣେ ବରିଷ୍ଠ ପତ୍ରକାର । ତମେ ଯେ କବି ହିସାବରେ ଅନନ୍ୟା, ଏହା ମୁଁ ଦୃଢ଼ତାର ସହିତ କହିପାରେ ।"

ଚତୁର୍ଥ ଜଣକ କହିଲା, "ମୁଁ ହେଉଛି ଆମ ରାଜ୍ୟର ସର୍ବୋଚ୍ଚ ଆଇନଜ୍ଞଙ୍କର ଆ.ଇ.ଏସ୍ ଡିଗ୍ରୀଧାରୀ ପୁତ୍ର । ଅନେକ ପତ୍ରପତ୍ରିକା ସହିତ ମୋର ସଂପର୍କ ଅଛି । ତମକୁ ମୁଁ ରାତାରାତ୍ ବିଶ୍ୱବିଖ୍ୟାତ କରେଇଦେବି । ବିଶ୍ୱବିଖ୍ୟାତ ରୋମାଣ୍ଟିକ୍ କବି ଓ୍ୱାର୍ଡସ୍‌ଓ୍ୱାର୍ଥ୍ , ସେଲୀ ଓ କିଟସ୍‌ଙ୍କ ପରେ ଉଚ୍ଚମାନର ରୋମାଣ୍ଟିକ୍ କବିର ସ୍ଥାନ ତମେ ପାଇବ ଆଉ ଦେଖିବ, କାଲି ସୂର୍ଯ୍ୟର ପ୍ରଥମ କିରଣ ପୃଥିବୀକୁ ସ୍ପର୍ଶ କରିବାବେଳକୁ ତମ ପାଖରେ ଅସଂଖ୍ୟ ମାନପତ୍ରର ଭିଡ଼ ଜମିବ । ଶାରଳା, ଜ୍ଞାନପୀଠ, ଜୟଦେବ, ରାଜ୍ୟ ଓ କେନ୍ଦ୍ର ସାହିତ୍ୟ ଏକାଡେମୀର ସବୁତକ ପୁରସ୍କାରରେ ତମରି ନାଁ ଲେଖାଯିବ । ତମ କବିତା ବିଭିନ୍ନ ପ୍ରାନ୍ତୀୟ ଓ ବିଦେଶୀ ଭାଷାରେ ଅନୁଦିତ ହେଇ ତମକୁ ଆନ୍ତର୍ଜାତିକ ସମ୍ମାନ ଆଣିଦେବ । ଖାଲି ଆମର

ସାମାନ୍ୟ ଇଙ୍ଗିତରେ ଜୀବନର ସବୁ ସୌଭାଗ୍ୟ ତମ ପାଦତଳେ ଅଜାଡ଼ି ହେଇପଡ଼ିବ।"

ଝିଅଟି ନିଜକୁ ଅସହଜ ମନେକଲା। କହିଲା, "ତେବେ ମୁଁ ଯାଉଛି।"

"ଯିବ ! ସେମାନେ ହୋ ହୋ ହେଇ ହସିଲେ।" କେଡ଼େ ବୋକୀ ଝିଅଟା ମ! ତମ ସ୍ୱପ୍ନକୁ ବାସ୍ତବ କରିବାକୁ ହେଲେ ତମକୁ ଆଜି ରାତିଟା ଏଇଠି ରହିବାକୁ ହେବ।"

"ଏଇଠି ରହିବି ! କିନ୍ତୁ କାହିଁକି ?" କହିଲା ଝିଅଟି।



" କିଛି ପାଇବାକୁ ହେଲେ କିଛି ଦେବାକୁ ହୁଏ। ଏ କଥା କ'ଣ ତମେ ଜାଣିନ ? ଆଜି ରାତିଟା ତମେ ଆମ ସହିତ ଖେଳିବ।"

"ଖେଳିବି ? ଆପଣମାନଙ୍କ ସହିତ ! କି ଖେଳ ?" ଝିଅଟି ଡରି ଡରି ପଚାରିଲା।

ପୁଣି ସେମାନେ ହୋ ହୋ ହେଇ ହସିଉଠିଲେ। କହିଲେ, "କାହିଁକି ? ଫୁଲ-ପ୍ରଜାପତିର ଖେଳ ! ଫୁଲ ଆଉ ଭଅଁରର ଖେଳ ! ସ୍ୱପ୍ନ ଆଉ ପ୍ରାପ୍ତିର ଖେଳ!"

ଏତିକି କହି ଝିଅଟିର ଅତି ନିକଟକୁ ଲାଗିଯାଇ ସେମାନେ ତାକୁ ବାଦୁଡ଼ି ଭଳି ଖୁମ୍ପିବାକୁ ଆରମ୍ଭ କଲେ। ବିଚାରୀ ସରଳା ଝିଅଟା ! ସେମାନଙ୍କର କାମନାର କ୍ଷୁଧିତ ହେଷ୍କାର ଶୁଣି ପ୍ରାଣବିକଳରେ ଛଟପଟ ହେଇ ଚିତ୍କାର କରିଉଠିଲା।

ହଠାତ୍ ଝିଅଟିର ଦୁର୍ବଳ ଦେହରେ ଯେମିତି ଅଜସ୍ର ଶକ୍ତି ଭରିଗଲା। ଅର୍ଦ୍ଧଉଲଗ୍ନ ଅବସ୍ଥାରେ ସେମାନଙ୍କର ବଳୟ ଭିତରୁ ସେ ଖସିଆସିଲା। ତା' ହାତରେ ପଡ଼ିଗଲା ଘର କାନ୍ଥରେ ଝୁଲୁଥିବା ରାଇଫଲ୍‌ଟାଏ। ଅନଭ୍ୟସ୍ତ ହାତରେ ରାଇଫଲ୍‌ର ଟ୍ରିଗାର୍ ଚାପିଧରି ଝିଅଟି ଗର୍ଜିଉଠିଲା, "ନରାଧମ ! ବର୍ବର ! ପଶୁ ! ଏଇ ତମର ଅସଲରୂପ। ସମାଜସେବା, ସଚ୍ଚୋଟତା ନିର୍ମଳ ଭାବମୂର୍ତ୍ତିର ଖୋଳପାପିନ୍ଧା ତମେ ଜଣେ ଜଣେ ରକ୍ତଲୋଲୁପୀ ବାଘ ! ହେ ସମାଜର ଶ୍ରେଷ୍ଠ ମାନବଗଣ ! ତମରି ଅସାଧୁତା, ତମରି ସ୍ୱାର୍ଥପରତା ଯୁଗେ ଯୁଗେ ନାରୀଜାତିକୁ ନିର୍ଯ୍ୟାତିତା କରି ଆସିଛି। ନାରୀର ଆତ୍ମାକୁ ଶୋଷଣ କରିଆସିଛି। ତମରିମାନଙ୍କ ଭଳି ପୁରୁଷଙ୍କ ପାଇଁ ତ୍ରେତୟାଯୁଗରେ ପାପିଷ୍ଠ ରାବଣ ଦ୍ୱାରା ଅପହୃତା ଜାନକୀ ଅଗ୍ନିପରୀକ୍ଷା ପରେ ବି ମୁକ୍ତି ପାଇଲେନି। ଦ୍ୱାପରଯୁଗରେ ପଞ୍ଚମହାରଥୀଙ୍କ ପତ୍ନୀ ଦ୍ରୌପଦୀକୁ କ୍ଷମାତାନ୍ଧ ଦୁର୍ଯ୍ୟୋଧନ ଓ ଦୁଃଶାସନ କୁରୁସଭା ତଳେ ବିବସ୍ତ୍ର କରାଇ ନାରୀତ୍ୱକୁ ଅପମାନିତ କରିଥିଲେ ଆଉ ଗୌତମ ମୁନିଙ୍କ ସାଧ୍ୱୀପତ୍ନୀ ଅହଲ୍ୟାର ରୂପରେ ଲୁବ୍‌ଧ ହେଇ ସ୍ୱୟଂ ଦେବରାଜ ଇନ୍ଦ୍ର ଛଦ୍ମବେଶରେ ତା'ର ସତୀତ୍ୱ ଅପହରଣ କଲେ। ସେ ପାଲଟିଗଲେ ଶାପଗ୍ରସ୍ତା ପ୍ରସ୍ତରଖଣ୍ଡ ! ଆଧୁନିକ ଯୁଗରେ ନାରୀର

ଅସହାୟତା, ଦୁର୍ବଳତା, ସୁଖପ୍ରାପ୍ତିର ଦୁର୍ବାର ଲାଳସାର ସୁଯୋଗ ନେଇ ତମେ ତାକୁ ପଣ୍ୟ କରିଦେଇଛ ।

ତମମାନଙ୍କର ଅନ୍ଧଶାସନ ଭୟରେ କିଏ ତମ ହାତର ଖେଳଣା ପାଲଟୁଛି ତ, ଦାରିଦ୍ର୍ୟର କଷଣ ସହି ନ ପାରି କିଏ ବେଶ୍ୟାଳୟର ଘୁଙ୍ଗୁରକୁ ଆପଣେଇ ନଉଛି । ସଭ୍ୟତାର ଘୋଡ଼ାଦୌଡ଼ରେ ସାମିଲ୍ ହେବାକୁ ଯାଇ କିଏ ନିଜର ଅନିଛାସତ୍ତ୍ୱେ ତମ କାମନାର ଶିକାର ପାଲଟୁଛି । ସୁଖ-ସମ୍ପଦର ପ୍ରଲୋଭନ ଦେଖାଇ କେତେ ସରଳ ଅବଳାଙ୍କୁ ଜୋର୍ କରି ଅବାଟରେ ନେଇଯାଉଛି । ସମାଜସେବା ତମର ଏକ ଆବରଣ । ଆରେ ଇତର ମଣିଷ ! ନାରୀର ସୌନ୍ଦର୍ଯ୍ୟ ଓ ଶରୀର କେବଳ କାମନାର ସ୍ରୋତସ୍ୱିନୀଟିଏ ନୁହେଁ । ଥରେ ମାନିବକତାର ଚକ୍ଷୁ ଖୋଲି ଦେଖ ! ନାରୀର ଆଖିଝଲସା ରୂପଲାବଣ୍ୟ ଭିତରେ କେମିତି ବହିଯାଇଛି ଭଗିନୀ-ଜନନୀ-ଜାୟାର ପବିତ୍ର ଜାହ୍ନବୀଟିଏ !

ପାଗଳ ଭଳି ଅନେକ କିଛି ଗପିଗଲା ଝିଅଟି । ତା'ପରେ ରାଇଫଲ୍‌ଟାକୁ ଫିଙ୍ଗିଦେଇ ଅର୍ଦ୍ଧଉଲଗ୍ନ ଅବସ୍ଥାରେ ଦୌଡ଼ି ପଳାଇଲା । ସେଇଦନୁ ଝିଅଟି ଆଉ ଜହ୍ନ, ଫୁଲ, ପ୍ରଜାପତିକୁ ନେଇ କବିତା ଲେଖିନି । ଜୀବନର ନିର୍ମମ ବାସ୍ତବତା ହିଁ ତା' କବିତାର ପ୍ରାଣ ପାଲଟିଛି । ମନୁଷ୍ୟର ଚରମ ବିଶ୍ୱାସଘାତକତା ହିଁ ତା' କବିତାର ରସ ପାଲଟିଯାଇଛି । ମନ ଭିତରେ ବିଶ୍ୱାସ ଓ ଭରସାର ଦୀପଟିଏ ଜାଳି ପ୍ରତୀକ୍ଷା କରିଛି ! ଦିନେ ନା ଦିନେ ତା' କବିତାର ଚିହ୍ନରା ଗ୍ରାହକଟିଏ ଆସିବ । ସହୃଦୟ ପ୍ରକାଶକଟିଏ ଆସିବ । ପୁଣି ଭାବୁଛି, ଯେଉଁ ସମାଜ ଓ ଶାସନ ନିକଟରେ ମାନବିକତାର ସ୍ଲୋଗାନ୍ ଦଉଥିବା ମଣିଷ ନପୁଂସକ ପାଲଟିଯାଇଛି, ସେ ଭଳି ସମାଜ ଓ ବ୍ୟକ୍ତି ନିକଟରୁ ତା' ଭଳି ସ୍ୱାଭିମାନୀ ଝିଅଟିଏ ସତରେ କ'ଣ ନ୍ୟାୟ ପାଇବ ? ପ୍ରତୀକ୍ଷାର ସୁଦୀର୍ଘ ପଥ ଅତିକ୍ରମ କରୁ କରୁ ଝିଅଟି ଶୂନ୍ୟକୁ ପଚାରିବସେ, "ଏ ପ୍ରତୀକ୍ଷାର ଶେଷ କେବେ ? ତା' ସ୍ୱପ୍ନଭଂଗର ଯନ୍ତ୍ରଣାର ପରିସମାପ୍ତି କେବେ? କେବେ ? କେବେ ?"



# ନୂଆପୁରୁଣା

ପ୍ରଶାନ୍ତଙ୍କ ଶୋଇବାଘର ଟି.ଭି.ରୁ ଗୀତର ସ୍ୱର ଭାସି ଆସୁଥିଲା । ତା' ସହିତ ପ୍ରଶାନ୍ତ ଓ ବୋହୂ ବନ୍ଦିତାର ହସ ଶୁଭୁଥିଲା । ଆରପାଖ ଘରେ ନାତି ଶୁଭ୍ର ଓ ନାତୁଣୀ ଶୁଭ୍ରା ଟେପ୍‌ରେକର୍ଡରେ ହିନ୍ଦୀ ଗୀତ ବଜାଇ ଖୁବ୍ ଜୋର୍‌ରେ ନାଚୁଥିଲେ । ସକାଳର ପବିତ୍ର ମୁହୂର୍ତ୍ତରେ ଘରଟା ସାରା ଖାଲି ନାଚ, ଗୀତ ଆଉ ହସର ସୁଅ ଛୁଟୁଥିଲା । ଠାକୁରଘରେ ଠାକୁର ପୂଜା ସାରି ଗୀତା ପଢୁ ପଢୁ ଅନ୍ୟମନସ୍କ ହେଇପଡୁଥିଲେ ସୁନୀତା ଦେବୀ । ତାଙ୍କର ଏକାଗ୍ରତା ଭଙ୍ଗ ହେଉଥିଲା । ହେଲେ, କହିବେ କାହାକୁ ? ପୁଅବୋହୂଙ୍କୁ ଶାସନ କରିବାର, କି ଭଲମନ୍ଦରେ ଆକଟ କରିବାର ଯୁଗ ଚାଲିଯାଇଛି । ଆଉ ନାତିନାତୁଣୀଙ୍କୁ କହିଲେ ସେ ଦୁହେଁ ଚିହିଁକି ଉଠିବେ, କହିବେ, "Old lady, କାହିଁକି ସକାଳଟାରୁ ବକର ବକର ହେଉଛୁ ! Damn your ଭଗବାନ୍, ପୁରାଣ, ଗୀତାପଢ଼ା !"

ଯୁଗ କ'ଣ ହେଲା ସତରେ ! ଏ ଘର କ'ଣ ଥିଲା ଆଉ କ'ଣ ହେଲା ! ଅନ୍ୟମନସ୍କ ହେଇପଡ଼ିଲେ ସୁନୀତାଦେବୀ । ଗୀତା ବହିର ପ୍ରତିଟି ପୃଷ୍ଠାରେ ଭଗବାନ୍ ଶ୍ରୀକୃଷ୍ଣଙ୍କ ରୂପ ପରିବର୍ତ୍ତେ ଅତୀତ ଛବିଗୁଡ଼ିକ ଗୋଟିକ ପରେ ଗୋଟିଏ ଭାସିଉଠୁଥିଲା । ସିଏ ଯେତେବେଳେ ଏ ଘରକୁ ବୋହୂ ହୋଇ ଆସିଥିଲେ, ହାତେ ଲମ୍ବର ଓଢ଼ଣା ଟାଣି, ପାଦ ଚାପି ଚାପି ଚାଲିବାକୁ ପଡୁଥିଲା । ବଡ଼ପାଟିରେ କଥା କହିଲେ କି ବାସନକୁସନ ଅକସ୍ମାତ୍ ହାତରୁ ଖସି ପଡ଼ିଲେ, ଶାଶୁ କହୁଥିଲେ, "ଏ ବୋହୂଟା ଖରଖରୀ ! କଳିହୁଡ଼ି ! ଅଲକ୍ଷଣୀ !" ଶାଶୁ ବଞ୍ଚିଥିବା ପର୍ଯ୍ୟନ୍ତ ସ୍ୱାମୀଙ୍କ ସହିତ ଦିନବେଳେ ପଦେ କଥା କହିବା କି ବାହାରକୁ ବୁଲିଯିବା ତାଙ୍କ ଭାଗ୍ୟରେ ଜୁଟି ନ ଥିଲା ।

ସେ ତାଙ୍କର ଏକମାତ୍ର ପୁଅ ପ୍ରଶାନ୍ତର ବାହାଘର ପାଇଁ କଣ୍ଢେଇ ଭଳି ଖୁବ୍ ସୁନ୍ଦରୀ ବନାନୀକୁ ପସନ୍ଦ କରିଥିଲେ। ବାହାଘରର ଦିନ କେଇଟା ନ ଯାଉଣୁ ପୁଅବୋହୂ ହନିମୁନ୍ କରିବାକୁ ବାଙ୍ଗାଲୋର୍ ଚାଲିଗଲେ। ସେଠାରୁ ଫେରିଲା ପରେ ବୋହୂର ବେଶଭୂଷା, ଚାଲିଚଳଣ, ବ୍ୟବହାର ସବୁ ବଦଳିଗଲା। ଶାଢ଼ୀ ପରିବର୍ତ୍ତେ ବନାନୀ ଚୂଡ଼ିଦାର ପିନ୍ଧିଲା। ମୁଣ୍ଡର ଲମ୍ବା କେଶକୁ କାଟି ଛୋଟ କଲା। ସିନ୍ଦୂର ପରିବର୍ତ୍ତେ ଟିକିଲି ପିନ୍ଧେ। ନଚେତ୍ ସବୁବେଳେ ଶୂନ୍ୟକପାଳ ଆଉ ଶୂନ୍ୟସିନ୍ଥା ! ହାତରେ ଅଭିଆଡ଼ୀ ଝିଅଭଳି ପଟେ ପଟେ ସୁନାକାଚ, ବାସ୍ ! ସୁନୀତାଦେବୀଙ୍କୁ ସବୁଠୁ ବେଶୀ ଦୁଃଖ ଲାଗେ ଯେ ବନାନୀ ତାଙ୍କୁ ଥରଟିଏ ଆଦରରେ 'ବୋଉ' ବୋଲି ଡାକିନି। ପାଖରେ ବସି ନିଜ ହାତରେ ଗଣ୍ଡାଏ ଖାଇବାକୁ ବାଢ଼ିଦେଇନି। ସୁନୀତାଦେବୀଙ୍କର ଝିଅ ନ ଥିଲା। ସେ ବନାନୀକୁ ନିଜ ଝିଅ ରୂପରେ ଦେଖି ଖୁସିରେ ଫାଟି ପଡୁଥିଲେ। ସମସ୍ତଙ୍କୁ କହୁଥିଲେ, "ବନାନୀ ମୋ' ବୋହୂ ନୁହେଁ ମ ! ସେ ମୋ ଝିଅ। ଦେଖିବ ସେ କେମିତି ମୋ' ମନକଥା ବୁଝି ମତେ ଆପଣେଇ ନେବ।" ତାଙ୍କ ଆଶା ଆଶାରେ ହିଁ ରହିଗଲା। ବୋହୂର ଏ ରଙ୍ଗଢଙ୍ଗ ଦେଖି ନରହରିବାବୁ ସୁନୀତାଦେବୀଙ୍କୁ ବନାନୀକୁ ଆକଟ କରିବାକୁ କହିଲେ। ସାଇପଡ଼ିଶାଙ୍କର ଟାହିଟାପରରା, ବୋହୂର ଉଗ୍ର ଆଧୁନିକତା ସୁନୀତାଦେବୀଙ୍କ ମନରେ ଦୁଃଖ ଦେଉଥିଲା। ତେଣୁ ସେ ଦିନେ ବନାନୀକୁ କହିଲେ, "ମା' ବନି ! ତୁ ଶାଢ଼ୀ ପିନ୍ଧିଲେ କେତେ ସୁନ୍ଦର ଦେଖାଯାଉ ଜାଣିଛୁ ? ସତେ ଯେମିତି ଦେବୀପ୍ରତିମାଟିଏ ! ମଥାରେ ସିନ୍ଦୂର, ହାତରେ ପାଣିକାଚ ଆଉ ନାଲିଶଙ୍ଖା, ଦେହରେ ଶାଢ଼ୀ-- ଏହା କୂଳବଧୂର ଭୂଷଣ ମାଆ ! ଏହା ବୋହୂର ମର୍ଯ୍ୟାଦା, ସମ୍ମାନ ବଢ଼ାଇଥାଏ। ସ୍ୱାମୀର ଯଶ, ପୌରୁଷ ଓ ଆୟୁଷ ବୃଦ୍ଧି କରାଏ। ମା ଲୋ! ମୋ କଥା ମାନି ଏ ବେଶପୋଷାକ ପିନ୍ଧିବା ଛାଡ଼ି ଦେ। ଅଭିଆଡ଼ୀ ଝିଅଙ୍କୁ ଏ ସବୁ ଶୋଭାପାଏ। ତା'ଛଡ଼ା ଆମ ସମାଜର ଚାଲିଚଳଣି, ବଂଶପରମ୍ପରା, ରୀତିନୀତିକୁ ତ ମାନିବାକୁ ପଡ଼ିବ......।"

ତାଙ୍କ କଥା ନ ସରୁଣୁ ବନାନୀ ଚିହିଁକି ଉଠିଲା। କହିଲା, "ତମର ଯଦି ଦେବୀପ୍ରତିମା ଭଳି ବୋହୂ ଦରକାର ଥିଲା, ତା'ହେଲେ କାରିଗରକୁ କହି ପ୍ରତିମାଟିଏ

ଗଢ଼ି ପୁଅ ସହିତ ବାହା କରେଇଦେଲନି ! ଯୁଗ ବଦଳିଗଲାଣି । ସେ ସବୁ ପୁରୁଣାକାଳିଆ ରୀତିନୀତିକୁ ମୁଁ ଆଦୌ ମାନିପାରିବିନି । ମୁଁ ଶାଢ଼ୀ ସିନା ପିନ୍ଧୁନି; କିନ୍ତୁ ଲଙ୍ଗଳା ତ ହେଇନି ......।" ଏତିକି କହି ଦୁମ୍ ଦୁମ୍ ଗୋଡ଼ କଚାଡ଼ି ଶୋଇବାଘରକୁ ଚାଲିଗଲା । ସେଦିନ ନ ଖାଇ ନ ପିଇ କନ୍ଦାକଟା କଲା । ପ୍ରଶାନ୍ତ ମାଆକୁ କହିଲା, "ବୋଉ ! ତୋର ଏତେ କଥା କହିବା କ'ଣ ଦରକାର ଥିଲା ? ଯୁଗ ସହିତ ପାଦ ମିଳାଇ ଆମକୁ ଚାଲିବାକୁ ତ ପଡ଼ିବ । ଯାହାର ଯାହା ରୁଚି, ସେହିଭଳି ସେ ଖାଇବ, ପିନ୍ଧିବ ଓ ଚଳିବ । ତୋ' ସମୟ ତ ଗଲାଣି, ଆମ ସମୟରେ ଆମେ ଆମ ସଂସାରକୁ କେମିତି ଚଳେଇବୁ, ସେଥିରେ ତୋର ମୁଣ୍ଡ ଖେଳାଇବା କ'ଣ ଦରକାର ଅଛି ? ତୁ ବୁଢ଼ୀ ହେଲୁଣି । ତୋର ଯାହା ଦରକାର ଆମକୁ କହିବୁ । ଖାଇବୁ, ପିଇବୁ, ରହିବୁ । ବାସ୍ ।"

ସେଇଦିନଠାରୁ ସୁନୀତାଦେବୀ ନୀରବ ହେଇଯାଇଛନ୍ତି । ଭାବନ୍ତି, "ଯୁଗ ବଦଳିଯାଇଛି , ଏ କଥା ସତ । ଯୁଗ ବଦଳିଗଲା ବୋଲି କ'ଣ ଆମ ଓଡ଼ିଆଘରର ଚାଲିଚଳଣି, ସଂସ୍କୃତି, ପରମ୍ପରା ସବୁ ବଦଳିଗଲା ! ଶିକ୍ଷା ମଣିଷ ମନକୁ ଅଧିକ ଉଦାର ଓ ବିଶାଳ କରାଏ । ମଣିଷର ଭଲମନ୍ଦ ବିଚାର କରିବାର ଶକ୍ତି ବଢ଼େ । ମାନସମ୍ମାନ, ଇଜ୍ଜତ ପ୍ରତି ମଣିଷ ଅଧିକ ଯତ୍ନବାନ୍ ହୁଏ । ନିଜ ସଂସ୍କୃତି, ବଂଶଗୌରବ ଓ ସାମାଜିକ ସ୍ଥିତି ପ୍ରତି ମଣିଷ ଅଧିକ ସଚେତନ ହୁଏ । ତା'ହେଲେ ସିନା ପରିବାରରେ ଓ ସମାଜରେ ସଚେତନ ବାତାବରଣ ସୃଷ୍ଟି ହେବ ! ନୂଆପୁରୁଣା ଭିତରେ ପ୍ରଭେଦ ସୃଷ୍ଟି କରି, ସବୁ ପରମ୍ପରାକୁ ଅନ୍ଧବିଶ୍ୱାସ ଓ କୁସଂସ୍କାର କହି ଘୃଣା କରିବା କ'ଣ ସଭ୍ୟତାର ପରିଚାୟକ ? ପୁରୁଣା ହିଁ ନୂଆର ପଥପ୍ରଦର୍ଶକ । ପୁରୁଣାକୁ ହିଁ ମଣିଷ ନୂଆରୂପରେ, ନୂଆରଙ୍ଗରେ ସଜାଏ । ଅଧିକ ମାର୍ଜିତ ଓ ସୁନ୍ଦର କରିବାକୁ ଚେଷ୍ଟା କରେ ।"

ମନର କଥା ମନରେ ରହେ ସୁନୀତାଦେବୀଙ୍କର । ଦୀର୍ଘଶ୍ୱାସ ପକାଇ ସବୁ ଦେଖି ନ ଦେଖିବାର ଛଳନା କରନ୍ତି । ନରହରିବାବୁଙ୍କ ଦେହାନ୍ତ ହେବା ପରେ ସେ ସଂପୂର୍ଣ୍ଣ ଏକା ପାଲଟିଯାଇଛନ୍ତି । କାହା ଆଗରେ ମନକଥା କହିବେ !

ପୁଅବୋହୂ, ନାତିନାତୁଣୀ ସମସ୍ତେ ନିଜ ନିଜ କାମରେ ବ୍ୟସ୍ତ। Old lady ସୁନୀତାଦେବୀ ସତରେ ଏ ଘରର ପୁରୁଣା, ଛିଣ୍ଡା ଅଦରକାରୀ କ୍ୟାଲେଣ୍ଡରଟିଏ ପାଲଟି ଯାଇଛନ୍ତି। ଗାଧୁଆତୁଠର ଗୋଡ଼ଘଷା ପଥରଟି ଭଳି ନିଷ୍ପନ୍ଦ ପାଲଟି ଯାଇଛନ୍ତି। ନୂଆର ଚିକ୍‌ମିକ୍ ଆଖିଝଲସା କୃତ୍ରିମତାରେ ତାଙ୍କ ପୁରୁଣା ଦେହ, ମନ, ଭାବନା, ଚିନ୍ତାଚେତନା ସବୁକିଛିରେ କଳଙ୍କି ଲାଗିଯାଇଛି। ପୁରୁଣା ସାମାଜିକ ସଂପର୍କର ସେ ସ୍ନେହ, ସେ ଆତ୍ମୀୟତାବୋଧ, ସୁଦୃଢ଼ ବନ୍ଧନ ସବୁ ହୁଗୁଳା ହୋଇଯାଇଛି ନୂଆର ଅମାନିଆ କ୍ଷିପ୍ର ସ୍ରୋତରେ।

୧୨/୧୪ ବର୍ଷର ଝିଅ କନକ ଏ ଘରର ଚାକରାଣୀ। ସେ ତାଙ୍କର ଖାଇବାପିଇବା, ଦେହମୁଣ୍ଡ କଥା ବୁଝେ। ତାଙ୍କର ଯାହା ଦରକାର, ସେ ତା'ରି ମାଧ୍ୟମରେ ହିଁ ପ୍ରଶାନ୍ତଙ୍କୁ କହନ୍ତି। ପୁଅ ହେଇ ଦିନେ ସେ ନିଜେ ମାଆ କଥା ବୁଝିବାକୁ ଇଚ୍ଛା କରିନି, ଅଥଚ ଏକୋଇରବଳା ବିଶିକେଶନ ପ୍ରଶାନ୍ତ ପାଇଁ ସୁନୀତାଦେବୀ ଦୁନିଆର ସବୁ ମାଆଙ୍କ ଭଳି କେତେ ସ୍ୱପ୍ନ ଦେଖିଥିଲେ। କେତେ ଆଶାର ବାଇଆବସା ବୁଣିଥିଲେ। ସେ ବନାନୀର ଦୋଷ କେବେ ବି ଦିଅନ୍ତିନି। ଆପଣା ସୁନା ତ ଭେଣ୍ଡି ! କହିବେ କାହାକୁ ! ତାଙ୍କ ଦେହ ଖରାପ ଥିବାବେଳେ ନାତିନାତୁଣୀ କେହି ତାଙ୍କ ପାଖକୁ ନ ଯିବାକୁ ବୋହୂର କଡ଼ା ତାଗିଦ୍। ସୁନୀତା-ଦେବୀ ନାତିନାତୁଣୀଙ୍କୁ କୋଳରେ ବସେଇ, ଗପ କହି ଗେହ୍ଲା କରିବାକୁ କେତେ ତହଳବିକଳ ହୁଅନ୍ତି। ସବୁ ଭାଗ୍ୟର ଦୋଷ ଦେବା ଛଡ଼ା ଆଉ କିଛି କରିପାରନ୍ତନି ସୁନୀତାଦେବୀ।

କନକ ଡାକିଲା, "ମାଆ ! ଆଜି କ'ଣ ଠାକୁରପୂଜା ସରିବନି କି ? ବାବୁବାବୁଆଣୀ ପିଲାଙ୍କୁ ନେଇ ଦୁଇଦିନ ପାଇଁ ବାହାରକୁ ବୁଲିଯିବେ।" ଘରର ଦାୟିତ୍ୱ କନକ ଉପରେ। ଗଲାବେଳେ ପ୍ରଶାନ୍ତ କହିଲା, "ଆମେ ବାହାରକୁ ଯାଉଛୁ। କନକ ଅଛି। କିଛି ଅସୁବିଧା ହବନି।"

ସୁନୀତାଦେବୀ କିଛି କହିଲେନି। କାହାଠାରୁ କିଛି ଆଶା କରିବାଟା ମଣିଷର ବଡ଼ ଭୁଲ୍ ! କନକ ପରଝିଅଟା ହେଲେ କ'ଣ ହେବ, ସେ ହିଁ ତାଙ୍କ ମନକଥା

ବୁଝେ । ନିଠେଇ ନିଠେଇ ସବୁକଥା ପଚାରେ । ତାଙ୍କ ପଛେ ପଛେ ଛାଇପରି ରହିଥାଏ । ସୁନୀତାଦେବୀଙ୍କ ମନରେ କୋହ ଉଠେ । ଯାହାକୁ ଦଶମାସ ଜନ୍ମ ଦେଇଥିଲେ, ସେ'ତ ଦିନେ ତାଙ୍କ ମନକଥା ବୁଝିଲାନି ଆଉ କନକ .....।

ସୁନୀତାଦେବୀଙ୍କ ଗୋଡ଼ରେ ତେଲ ଘଷି ଦେଉ ଦେଉ କନକ କହିଲା, "ଯାହା କୁହ ମାଆ, ବାବୁବାବୁଆଣୀ କିଛି ଠିକ୍ କରୁନାହାନ୍ତି । ଏ ଘରେ ରହିବାକୁ ମୋଟେ ଇଛା ନାହିଁ । ଦେଖୁନ, ସବୁକଥାରେ ବାବୁଆଣୀ କେମିତି ଟାଇଁ ଟାଇଁ ହଉଛନ୍ତି । ଆମେ ଗରିବ ହେଲେ କ'ଣ ଆମର ମାନସମ୍ମାନ ନାହିଁ ? ତମ ଅଇଁଠାବାସନ ଧୋଉଛୁ ବୋଲି କ'ଣ ଆମେ ମଣିଷ ନୁହେଁ ? ମୋ ମାଆ ଆଉ ଗୋଟାଏ ଜାଗାରେ କାମ ବୁଝିଥିଲା । ମତେ ଏଠୁ କାମ ଛାଡ଼ିଦବାକୁ କହୁଥିଲା । ହେଲେ ମୁଁ ମନାକଲି ।"

"କାହିଁକି ମନାକଲୁ ? ମୁଁ ତ ମାଆ ହେଇ ଏ ଘରେ ଟିକେ ଶାନ୍ତି



ପାଇପାରୁନି । ତତେ ଯୋଉଠି ସୁବିଧା ହେବ, ସେଠିକି ପଳା । ତୋର ଏଠି ନିଜର କିଏ ଅଛି ଯେ, ପଡ଼ିରହି ଦୁଃଖ ପାଇବୁ !'' କହିଲେ ସୁନୀତାଦେବୀ ।

କଥା ଛଡ଼େଇ କନକ କହିଲା, ''ସେ କଥା କହିବନି ମାଆ ! ତମେ କ'ଣ ମୋର ମାଆ ନୁହଁ ? ତମଭଳି କିଏ ଗୋଟାଏ ଚାକରାଣୀକୁ ପାଖରେ ବସେଇ ଦୁଃଖସୁଖ ପଚାରିବ, ସ୍ନେହ କରିବ କହିଲ ? ଖାସ୍ ତମରି ପାଇଁ ଏଠୁ ଛାଡ଼ିଯିବାକୁ ମୋର ମନହଉନି । ମୁଁ ମାଆକୁ ସଫା ସଫା କହିଦେଇଛି, ତମେ ଥିଲା ପର୍ଯ୍ୟନ୍ତ ମୁଁ ଏ ଘର ଛାଡ଼ିବିନି କି ବାହା ହେବିନି । ମୁଁ ଗଲାପରେ ଯିଏ ନୂଆ ଆସିବ, ସିଏ ଯଦି ତମକୁ ହଇରାଣ କରିବ ? ବାବୁବାବୁଆଣୀ ତ ତମକୁ ସବୁବେଳେ 'ପୁରୁଣାକାଳିଆ ଲୋକ' କହି ନାକ ଟେକୁଛନ୍ତି । ତମେ କେତେ କଷ୍ଟ ପାଉଛ କହିଲ? ମୁଁ ଏ ଘରର ଲୁଣ ଖାଉଛି ଟି ! ମତେ ଯେତେ କଷ୍ଟ ହେଲେ ବି କୁଆଡ଼େ ଯିବିନି ।''

କନକ ଏକ ଅନାତ୍ମୀୟ, ଅଳ୍ପଶିକ୍ଷିତ ମଣିଷଟିଏ ହେଇ ତା' ମନରେ ତାଙ୍କ ପ୍ରତି ଏତେ ସ୍ନେହ, ଏତେ ଭଲପାଇବା, ଏତେ ଦରଦ ଓ ଏତେ ଆତ୍ମୀୟତା ଭରିରହିଛି ଜାଣି ସୁନୀତାଦେବୀ ନିଜ କୋହ ସମ୍ବରଣ କରିପାରିଲେନି । କନକକୁ ନିଜ କୋଳରେ ଭିଡ଼ିଧରି କହିଲେ, ''ତୁ ଚାକରାଣୀ ନୁହଁ ଲୋ ! ତୁ ମୋ ଝିଅ ! ହଁ ତୁ ମୋ ଝିଅ ! ପୁରୁଣାଯୁଗର ଏ ପୁରୁଣା ମଣିଷଟାକୁ ତୁ ହିଁ ଠିକ୍ ଚିହ୍ନିପାରିଛୁ ।''





# ମଧ୍ୟାହ୍ନର-ଶେଷ ସୂର୍ଯ୍ୟ

"ଚଳଚଞ୍ଚଳା-ଚପଳ-ବେଗମତୀ ନଦୀ ହିଁ ନାରୀ । ମୋ ପାଇଁ ନାରୀ ଫୁଲଦାନୀରେ ସଜା ହୋଇଥିବା ରଂଗିନ୍ ଫୁଲତୋଡ଼ାଟିଏ, ଯାହାକୁ କେବଳ ମନଭରି ଆଦର କରିହୁଏ, ଯାହାକୁ ମନମୁତାବକ ସଜେଇରଖି ଘରର ସୌନ୍ଦର୍ଯ୍ୟ ବୃଦ୍ଧି କରାଯାଇପାରେ । ନାରୀର ସଂଜ୍ଞା ଯା'ଠାରୁ ଆଉ ଅଧିକ କ'ଣ ହେଇପାରେ ସ୍ୱପ୍ନା !"

"ଆଉ ନାରୀ ! ସେ ତ ଘରର ଚାରିକାନ୍ଥ ଭିତରେ ସୁନ୍ଦର ଖେଳନାଟିଏ । ପରିବାରର ସୁଖ ପାଇଁ ତ୍ୟାଗ ହିଁ ତା' ଜୀବନର ଏକମାତ୍ର ପୂର୍ଣ୍ଣତା । ପତିର ଶାରିରୀକ, ମାନସିକ ଓ ଅର୍ଥନୈତିକ ସଂହତି ରକ୍ଷା କରିବା ହିଁ ପତ୍ନୀର ଏକମାତ୍ର ଧର୍ମ । ଗୃହାଙ୍ଗନରେ ତୁଳସୀ ଚଉରାମୂଳେ ଦିକି ଦିକି ଜଳୁଥିବା ସଳିତାଟି ଭଳି ପତ୍ନୀ ପବିତ୍ର ଓ ମହାନ୍ ହେଇପାରେ; ମାତ୍ର ପରିବାର ବାହାରେ ତା'ର ଭୂମିକା

କ'ଣ ? ଖାଲି ପତି ପାଇଁ ଏକ ନିର୍ଦ୍ଦିଷ୍ଟ ସମାଜିକ ଦଲିଲ୍। ନିରପେକ୍ଷ ସାମାଜିକ ମୋହର, ଯାହାକୁ ନେଇ ପତି-ପୁରୁଷଟିକୁ ସମାଜରେ ଭଦ୍ର, ସୁସଂପନ୍ନ, ସୁପୁରୁଷ ବୋଲି ପରିଚୟ ଦେଇଥାଏ। ପତ୍ନୀର ଚିରାଚରିତ ଧରାବନ୍ଧା କର୍ତ୍ତବ୍ୟବୋଧରୁ ଊର୍ଦ୍ଧ୍ୱରେ ତ ତମେ ନୁହଁ ! ଆଉ ତମେ କାହିଁକି ନିଜକୁ ଏତେ ସ୍ୱତନ୍ତ୍ର ବୋଲି ମନେକର ସ୍ୱପ୍ନା ? ଏଇଟା ତମ ମନର ଇଗୋ, ତମ ମନର ହିପୋକ୍ରାସି ବ୍ୟତୀତ ଆଉ କ'ଣ ହେଇପାରେ ?"

ସ୍ୱପ୍ନାର ଧ୍ୟାନଭଗ୍ନ ହେଲା। ଦୀର୍ଘ ପାଞ୍ଚବର୍ଷର ବ୍ୟବଧାନ ଭିତରେ ସେ ଅଜୟକୁ ମନ ଭିତରୁ ପୋଛି ଦେଇଛି। ଆଜି ହଠାତ୍ ମଧ୍ୟାହ୍ନର ଏ ଅଳସ ମୁହୂର୍ତ୍ତରେ ଅଜୟର ସେଇ କେଇପଦ କଥା ସ୍ୱପ୍ନା କାନରେ ଗୁଞ୍ଜରିତ ହୋଇଉଠୁଛି। ଇସ୍ ! କି ଜଘନ୍ୟ ସତେ ! ନାରୀ ପ୍ରତି ଅଜୟ ମନର ଏ ଭୁଲ୍ ହିସାବ ଯୋଗୁ ହିଁ ଆଜି ସ୍ୱପ୍ନା ଓ ଅଜୟ ଦୁଇଟି ଭିନ୍ନମୁଖୀ ସ୍ରୋତ ପାଲଟି ଯାଇଛନ୍ତି।

ଅଜୟ ଓ ସ୍ୱପ୍ନା ! ସୁଖୀ ଦମ୍ପତି ! ଅଜୟ ! ବୈବାହିକ ଜୀବନର ଦଶଟି ସୋପାନ ଆମେ ଅତି ସହଜ ଓ ସରଳ ଭାବେ ଅତିକ୍ରମ କରିସାରିଥିଲେ। ଇନ୍ଦ୍ରଧନୁର ସାତରଙ୍ଗ ସତେ ଯେମିତି ନେସି ହେଇଯାଇଥିଲା ଆମ ଛୋଟିଆ ସଂସାରଟିରେ। ଆଉ ସେଇ ଛୋଟିଆ ସଂସାରକୁ ସୀମାହୀନ ସୁଖ ନେଇ ଆସିଯାଇଥିଲେ ଦୁଇଟି ପାରିଜାତ; ସଂଜିତା ଓ ସରିତା। ଆଜି ଏତେବର୍ଷ ପରେ ମଧ୍ୟ ମୁଁ ସ୍ୱୀକାର କରୁଛି ଅଜୟ ! ତମଭଳି ସ୍ୱାମୀ-ପୁରୁଷଟିଏ ପାଇ ମୁଁ ନିଜକୁ ସର୍ବାଧିକ ଭାଗ୍ୟବତୀ ମନେକରୁଥିଲି। ତମର ଗୋଟିଏ ମୁହୂର୍ତ୍ତର ବିଚ୍ଛେଦରେ ମୋ ଆଖିରେ ଅମାନିଆ ଲୁହ ଭରିଯାଉଥିଲା। ତମେ ବି ଅଜୟ ! ମୋ ସ୍ନେହପାଗଳ ଦୁର୍ବଳ ମନକୁ ଦେଖି ଅନେକଥର କହିଛ, "ସ୍ୱପ୍ନା ! ତମେ ଜଣେ ଉଚ୍ଚଶିକ୍ଷିତା ଉପାର୍ଜନାକ୍ଷମ ଝିଅ ହେଇ ବି ଏତେ ଦୁର୍ବଳ ? ମୋର ଯଦି କିଛି ହେଇଯାଏ, ଏ ଦୁନିଆରେ ତମେ କେମିତି ରହିବ ?"

ସତରେ ତମେ ଏକ ଭିନ୍ନମଣିଷ ପାଲଟିଗଲ। ତମେ ଭୁଲିଗଲ ଆମର ଦଶବର୍ଷର ପ୍ରତିଶ୍ରୁତିଭରା ଦାମ୍ପତ୍ୟ ଜୀବନକୁ, ଯାହା ମୋର ଏକମାତ୍ର ପ୍ରାପ୍ୟ,

ସେଇ ଅଧିକାରଟିକୁ ତମେ କେମିତି ମିତାକୁ ଦେଇଦେଲ ? ମିତା ମୋର ସମ୍ପର୍କୀୟା । ସେ ହଷ୍ଟେଲ୍‌ରେ ରହି ପଢୁଥିଲା । ମଝିରେ ମଝିରେ ଛୁଟି ହେଲେ ଆମ ଘରକୁ ବୁଲିଆସେ । ହଠାତ୍ ତମେ ଦିନେ ପ୍ରସ୍ତାବ ଦେଲ, "ମିତାଟା ହଷ୍ଟେଲ୍‌ରେ ଭାରି ହଇରାଣ ହଉଚି । ଆମ ଘରେ ରହିଗଲେ କେମିତି ହୁଅନ୍ତା ? ତମେ ଦୁଇଟା ଛୁଆଙ୍କୁ ନେଇ ହଇରାଣ ହଉଚ । ତମକୁ କାମରେ ତ ସାହାଯ୍ୟ କରନ୍ତା ।" ମିତା ସତରେ ଖୁବ୍ ଭଲ ଝିଅ । ମୁଁ ତମ ପ୍ରସ୍ତାବରେ ରାଜି ହେଇଗଲି । କାହିଁକି ଜାଣ ଅଜୟ ? ତମକୁ ସୁଖୀ କରିବା ମୋର ଏକମାତ୍ର ଧ୍ୟେୟ ଥିଲା । ସମସ୍ତଙ୍କୁ ସହଜ ଭାବରେ ଗ୍ରହଣ କରିନେବା ମୋର ପ୍ରକୃତି ଥିଲା । ବିଶେଷତଃ, ତମର ପ୍ରତ୍ୟେକ କାର୍ଯ୍ୟକଳାପକୁ ନିଃସନ୍ଦେହରେ ଗ୍ରହଣ କରିନେବା ଥିଲା ମୋର ଏକ ବଡ଼ ଦୁର୍ବଳତା । ତମେ ବି ସେଇ ଦୁର୍ବଳତାର ସୁଯୋଗ ନେଇ ମୋ' ମନରେ ବିରାଟ ଏକ କ୍ଷତ ସୃଷ୍ଟି କରିଦେଲ ।

ମିତା ଆମଘରେ ରହିବା ପରେ ତମେ ତା'ର କାର୍ଯ୍ୟକଳାପ, ପୋଷାକପତ୍ର ତା' ରୁଚିକୁ ଖୁବ୍ ତାରିଫ୍ କରିବାକୁ ଲାଗିଲ । ମୁଁ ବି ତାକୁ ସଞ୍ଜିତା ଓ ସରିତାଙ୍କଠାରୁ ବଳି ଅଧିକ ସ୍ନେହ କରୁଥିଲି । ପ୍ରତି ପୂଜାପର୍ବରେ ତା' ପାଇଁ ଭଲ ଶାଢ଼ୀଟିଏ କି ଡ୍ରେସ୍‌ଟାଏ କରିବାକୁ ମୁଁ ତମକୁ ପ୍ରବର୍ତ୍ତାଉଥିଲି । ତାକୁ ଖୁସି କରିବା ପାଇଁ ତମେ ତା' ମନପସନ୍ଦର ସବୁ ଜିନିଷ ଖଞ୍ଜି ଦେଉଥିଲ । ଅଜୟ ! ମୋ ମନରେ ତମ ପ୍ରତି ଥରଟିଏ ବି ସନ୍ଦେହ ସୃଷ୍ଟି ହେଲାନି କାହିଁକି ? କାହିଁକି ମୁଁ ତମକୁ ଓ ମିତା ପରି ଏକ ବୟସ୍କା ଝିଅକୁ ନିର୍ବିକାର ଭାବରେ ଗ୍ରହଣ କରି ନେଇଥିଲି ? ମୁଁ କାହିଁକି ଭାବିଲିନି ଯେ, ମିତା ଓ ତମ ଭିତରେ ଧୀରେ ଧୀରେ ଏକ ଅବୈଧ ସମ୍ପର୍କ ଗଢ଼ିଉଠୁଛି ।

ହଁ ଅଜୟ ! ଥରେମାତ୍ର ମୋ' ମନରେ ସନ୍ଦେହର ଝଡ଼ ସୃଷ୍ଟି ହୋଇଥିଲା । ସେଦିନ ଥିଲା ଏପ୍ରିଲ୍ ୨୫ ତାରିଖ । ଆମର ବିବାହବାର୍ଷିକୀ । ସେଦିନଟି ପାଇଁ ତମେ ନିଜେ ହିଁ ଅନେକ ପ୍ରୋଗ୍ରାମ୍ କରିଥିଲ; କିନ୍ତୁ ହଠାତ୍ ତମେ ମିତା ସହିତ ତା' ଗାଁ'କୁ ଯିବାକୁ ଚାହିଁଲ । ମୋର ବାରଣ ନ ମାନି ତମେ ଚାଲିଗଲ । ସେଦିନ

ମୋ' ମନରେ ପ୍ରଚଣ୍ଡ ଧକ୍କା ଲାଗିଲା । ସାରାଦିନ ମୋ ଆଖିରୁ ଲୁହ ଝରିଲା । ତମେ ଫେରିବା ପରେ ଏକ ଭିନ୍ନ ମଣିଷ ପାଲଟିଗଲ । ମୋର ମାନଅଭିମାନ ସବୁକିଛି ତମ ପାଇଁ ଅସହ୍ୟ ହେଲା । ରାତି ରାତି ମୁଁ ଉପାସ ରହୁଥିଲି, ଅଥଚ ଏହା ପୂର୍ବରୁ ମୋର ସାମାନ୍ୟ ଅଭିମାନ ତମ ମନରେ ଗଭୀର ଯନ୍ତ୍ରଣା ଦେଉଥିଲା । ଛୋଟ ଛୁଆଟି ଭଳି କୋଳରେ ଧରି ମତେ ପ୍ରବୋଧନା ଦେଉଥିଲ । ମୁଁ ବିଶ୍ୱାସ କରିପାରିଲିନି ତମେ କ'ଣ ସେଇ ଅଜୟ ? ଦିନ ଦିନ ଧରି ତମେ ମୋ' ସହିତ କଥାବାର୍ତ୍ତା ବନ୍ଦ କରିଦେଲ । ସବୁବେଳେ, ସବୁ କାର୍ଯ୍ୟରେ ମିତା ହିଁ ତମର ସର୍ବସ୍ୱ, ସର୍ବାଧିକ ଧ୍ୟେୟ ପାଲଟିଗଲା । ମୋ' ଓଠରୁ ହସ ଲିଭିଗଲା । ଆଖିରୁ ନିଦ ହଜିଗଲା । କି ଏକ ଅସହ୍ୟ ବେଦନାବୋଧ ମୋର ଚିନ୍ତା, ଚେତନା ଓ ସମଗ୍ର ସତ୍ତାକୁ ଗ୍ରାସ କରିବସିଲା ।

ମୋର ମନେଅଛି ଅଜୟ ! ଏ ଘଟଣା ପରଠାରୁ ତମେ ଯେତେବେଳେ ରାତ୍ରିର ବିଳମ୍ବିତ ପ୍ରହରରେ ତମର ଅଧିକାର ଦାବି କରି ମୋ' ଦେହକୁ ଆପଣାର କରିନେବାକୁ ଚାହୁଁଥିଲ, ସେତେବେଳେ ମୁଁ ନିଜ ଅଜାଣତରେ ବରଫର-ପାହାଡ଼ଟିଏ ପାଲଟି ଯାଉଥିଲି ଯେମିତି । ତମ ସ୍ପର୍ଶ ମୋ' ଦେହରେ ରୋମାଞ୍ଚ ସୃଷ୍ଟି କରିବା ପରିବର୍ତ୍ତେ ଭରି ଦେଉଥିଲା ଆକଣ୍ଠ ଘୃଣା । ଆଉ ତମେ ବିରକ୍ତିରେ ମୋ' ନିର୍ଜୀବ ଶୀତଳ ଦେହଟାକୁ ଆଡ଼େଇଦେଇ ଉଠିଯାଉଥିଲ । ଦିନକୁ ଦିନ ମୋ' ମନରେ ତମ ପ୍ରତି ଦୂରତ୍ୱ ବଢ଼ି ଚାଲିଥିଲା ।

ମିତାର ପରୀକ୍ଷା ପରେ ସେ ଗାଁ'କୁ ଚାଲିଗଲା । ମୁଁ ଭାବିଲି ତମ ମୋ' ଭିତରର ଦୂରତା କମି କମି ଆମେ ପୁଣି ଏକାକାର ହେଇଯିବା, ମାତ୍ର ଯେଉଁଦିନ ମାଉସୀଙ୍କଠାରୁ ଚିଠି ପାଇଲି ମିତା ଅନ୍ତଃସତ୍ତ୍ୱା ଆଉ ତା'ର ଏ ଦୁର୍ଦ୍ଦଶା ପାଇଁ ମୁଁ ହିଁ ଦାୟୀ, ସେତେବେଳେ ମୋ ମୁଣ୍ଡ ଉପରେ ବଜ୍ର ଛିଡ଼ିପଡ଼ିଲା । ତମ ପ୍ରତି ମୋ' ମନରେ ଥିବା ସାମାନ୍ୟତମ ବିଶ୍ୱାସ ଲୋପ ପାଇଲା । ଦରଭଙ୍ଗା-ମନର-କାଚଟା ଦୁଇଫାଳ ହେଇଗଲା । ଅଜୟ ! ତମେ ଯେ ଏତେଦୂର ଆଗେଇଯିବ, ଏ ବିଶ୍ୱାସ ମୋର ନ ଥିଲା । ମୁଁ ଭାବିଥିଲି, ମିତା ତମର ପ୍ରେମିକା ହୋଇପାରେ, ମାତ୍ର ତମେ

ଯେ ତାକୁ ମାତୃତ୍ୱ ଦାନ କରିବ, ଏ କଥା ମୁଁ ଭାବିଥା'ନ୍ତି କିପରି ? କେଉଁ ରଙ୍ଗିନ୍ ସଂଧ୍ୟାରେ ବୁଲିଯିବା ବାହାନାରେ ତମେ ମିତାକୁ ନେଇ ହୋଟେଲ୍‌ରେ ବିତଉଥିଲ, ସେ କଥା ମୁଁ ଜାଣିବି କେମିତି ? ତମକୁ ସେ ବିଷୟରେ ପଚାରିବାରୁ ତମେ କହିଥିଲ, "ସନ୍ଦେହ କରିବା ନାରୀର ଏକ ସହଜାତ ପ୍ରବୃତ୍ତି।" ମିତା ସହିତ ତମର କୌଣସି ଶାରୀରିକ ସଂପର୍କ ନ ଥିବାର ପ୍ରମାଣ ଦବାକୁ ଯାଇ ତମେ ସଂଜିତା ଓ ସରିତାର ମୁଣ୍ଡ ଛୁଇଁ ଶପଥ କରିଥିଲ। ଏସବୁ ପରେ ମଧ୍ୟ ତମେ ମୋ' ପାଇଁ ପରପୁରୁଷ ପାଲଟି ଯାଇଥିଲ। ମୋ' ମନର ପୁଞ୍ଜିଭୂତ କ୍ରୋଧ, ଅଭିମାନ, ଅପମାନ ଓ ଅସମ୍ମାନ ବାରୁଦ ଭଳି ଜମାଟ ବାନ୍ଧୁଥିଲା। ତମର ବିଶ୍ୱାସଘାତକତା ମୋ' ନାରୀତ୍ୱ ପ୍ରତି ଚରମ ଅପମାନ ଥିଲା। କାହାକୁ କିଛି ମନଖୋଲି କହିଦେଇଥିଲେ ହୁଏତ ମୁଁ ଆଜି ନିଜେ ନିଜେ ନିର୍ବାସନ ଦଣ୍ଡ ଭୋଗୁ ନଥା'ନ୍ତି ଅଜୟ !

ସଂଜିତା ଓ ସରିତାଙ୍କ ପାଇଁ ଆତ୍ମହତ୍ୟା ଭଳି ଦୁର୍ବଳ ପ୍ରବୃତ୍ତିକୁ ମନରୁ ଦୂରେଇ ଦେଇଥିଲି। ଦୀର୍ଘ ଦୁଇବର୍ଷ କାଳ ମାନସିକ ସନ୍ତୁଳନ ସହି ସହି ମୁଁ ତମଠାରୁ ଦୂରେଇ ଯାଇଥିଲି। ସମାଜ ଆଖିରେ ସୁଖୀ ଦମ୍ପତ୍ତି ଭଳି ପ୍ରତୀୟମାନ ହେଉଥିଲେ ମଧ୍ୟ ଆମର ଭିତରଟା ଯେ ଠିକଣାହୀନ ଯାଯାବର ପାଲଟି ଯାଇଥିଲା, ସେ କଥା କେହି ଜାଣି ନ ଥିଲେ। ବାହାରକୁ ମୁଁ ଥିଲି ଖୁବ୍ ସ୍ୱାଭାବିକ ଓ ଶାନ୍ତ ! ହଠାତ୍ ଦିନେ ସାମାନ୍ୟ କାରଣରୁ ତମେ ମତେ ଝିଙ୍ଗାସିଲ, କହିଲ, "ଏ ଦୁନିଆରେ ଭଲ ଝିଅର ଅଭାବ ନାହିଁ, ବିଶେଷତଃ ମୋ ଭଳି ସୁପୁରୁଷ ପାଇଁ। ତମର ଯଦି ଇଛା ଥାଏ, ତମେ ବି ଅନ୍ୟ ଏକ ପୁରୁଷ ବାଛିନିଅ ସ୍ୱପ୍ନା ! "I don't mind it।" ସେଦିନ ପ୍ରଥମଥର ପାଇଁ ମୋ ରକ୍ତରେ ନିଆଁ ଲାଗିଗଲା। ତମେ ଯେ ଏ କଥା କହି ମୋ ନାରୀତ୍ୱକୁ ପଣ୍ୟଦ୍ରବ୍ୟ ସହିତ ସମାନ କରିଦେଲ ତା' ନୁହେଁ, ମୋ ଶଂଖା, ସିନ୍ଦୂରର ଅସମ୍ମାନ କରି ସମଗ୍ର ନାରୀଜାତିକୁ ଅପମାନିତ କଲ ଅଜୟ ! ନାରୀଜାତିର ଶକ୍ତିକୁ ଉପେକ୍ଷା କରି ବସିଲ। କେମିତି ଓ କାହିଁକି ମୁଁ ସହିଥା'ନ୍ତି ତମର ଏ ଅପମାନ ? ତମଭଳି ଜଣେ ଅମଣିଷ, ରୁଚିହୀନ, ବିବେକହୀନ ପୁରୁଷ ପାଇଁ ସର୍ବଂସହା ଧରିତ୍ରୀ ପାଲଟିଯିବାର ସାମାନ୍ୟତମ କାମନା ମୋର ନ ଥିଲା। କାହାକୁ କିଛି ନ ଜଣେଇ, କାହାରି ପରାମର୍ଶ ନ ନେଇ ମୁଁ ପ୍ରଥମଥର ପାଇଁ ମୋ

ଜୀବନର ଏକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ନେଲି । ବିବାହ-ବିଚ୍ଛେଦ କରି ତମ ସ୍ତ୍ରୀର ପରିଚୟ ଜାଲରୁ ମୁକ୍ତ କରିନେଲି । ନିଜେ ନିଜର ପରିଚୟ ନେଇ ବଞ୍ଚିବାର ସଂକଳ୍ପ କରି ମୁଁ ସଂଜିତା ଓ ସରିତାକୁ ଧରି ସବୁଦିନ ପାଇଁ ତମକୁ ପରିତ୍ୟାଗ କରି ଚାଲିଆସିଲି ।

ମୋ' ଜୀବନର ଏକଦା ସର୍ବଶ୍ରେଷ୍ଠ ସର୍ବୋତ୍ତମ ପୁରୁଷ ଅଜୟକୁ ପରିତ୍ୟାଗ କରିବା ଖବର ମୋର ବାପାମାଆ, ଭାଇଭାଉଜ, ବନ୍ଧୁପରିଜନ ସମସ୍ତଙ୍କୁ ଆଶ୍ଚର୍ଯ୍ୟଚକିତ କରିଦେଲା । ମୁଁ ଯେ ତମଭଳି ଏକ ସୁପୁରୁଷକୁ ପରିତ୍ୟାଗ କରି ଭୁଲ୍ କରିଛି, ଏଥିପାଇଁ ମତେ ସାରାଜୀବନ ଅନୁତାପ କରିବାକୁ ହେବ, ଏ କଥା ସମସ୍ତେ ଚେତେଇ ଦେଲେ । ତମ ସହିତ ପୁଣି ଥରେ ଘର ବାନ୍ଧିବାକୁ ପରାମର୍ଶ ଦେଲେ; କିନ୍ତୁ ମୁଁ କାହାରି ପ୍ରଶ୍ନର କିଛି ଉତ୍ତର ଦେଇ ନ ଥିଲି ଅଜୟ ।

ବିବାହ-ବିଚ୍ଛେଦ ପରେ ତମେ ମୋ ନାଆଁରେ ଅନେକ ଅପପ୍ରଚାର ଚଳେଇଲ । ନିଜକୁ ନିର୍ଦ୍ଦୋଷ ବୋଲି ସାବ୍ୟସ୍ତ କରିଦେଲ; କିନ୍ତୁ ମୁଁ ଆଜି କାହା ଆଗରେ କିଛି କୈଫିୟତ୍ ବାଢ଼ିନି ଅଜୟ ! ତମେ ସୁପୁରୁଷ କି କୁପୁରୁଷ, ଏ କଥା ମୋ'ଠାରୁ ଅଧିକ କିଏ ଜାଣେ ? ମୁଁ ଚାହିଁଥିଲି ନାରୀ ମନର ସରଳତା, ପତ୍ନୀ ହୃଦୟର ଭଲପାଇବା ଦେଇ ମୁଁ ତମକୁ, ତମ ସଂସାରକୁ ରଂଗିନ୍ ପୃଥିବୀଟିଏ କରିଦେବି । ହେଲେ ତମେ ! ତମେ ମୋ ଜୀବନର ସକଳ ମମତ୍ୱବୋଧ, ସ୍ନେହ-ପ୍ରୀତିକୁ ଏକ ସ୍ୱାର୍ଥପର ପୁରୁଷ ମନର-ନିକିତିରେ ତଉଲି ବସିଲ । ମୋର ସକଳ ଆଶା, ବିଶ୍ୱାସ, ଭାବନା, ସମ୍ଭାବନାକୁ ନାରୀର ଦୁର୍ବଳତା ଭାବି ଖେଳିବସିଲ ।

ଅଜୟ ! ପତିପତ୍ନୀର ସଂପର୍କ କେବଳ ସାମାଜିକ ମୋହରମରା ନିରପେକ୍ଷ ଦଲିଲ୍ ନୁହେଁ । ପତିପତ୍ନୀର ସଂପର୍କ ଜଉମୁଦ ଦିଆ ବନ୍ଦ-ଲଫାପା । ପ୍ରୀତି, ମମତାର ରଙ୍ଗକରା ରଂଗିନ୍ ଚିଠିଟିଏ, ଯାହାକୁ ମନର-ନିଭୃତ କୋଣରେ, ସଂଗୋପନରେ ସାଇତି ରଖାଯାଏ, ଅନ୍ୟ ପାଖରେ ନିଲାମ କରାଯାଏନି ।

ଅଜୟ ! ମୋ ଜୀବନର ମଧ୍ୟାହ୍ନରେ ଅସ୍ତସୂର୍ଯ୍ୟ ଭଳି ତମେ ଯେଉଁ କାଳିମା ଭରିଦେଲ, ତମେ ବି ଦିନେ ଏ କାଳିମାର କଳଙ୍କକୁ ଉପଲବ୍ଧି କରିବ ।

ସେତେବେଳେ ତମ ଉଦ୍ଧତ ପୁରୁଷମନର ଚଉହଦି ଏକ ନିଃଶବ୍ଦ ପୃଥିବୀ ପାଲଟିଯାଇଥିବ। ସେତେବେଳେ ତମ ପାଖରେ କେହି ନ ଥିବେ, ଥିବ ଖାଲି ଶୂନ୍ୟତା ଓ ନିଃସଙ୍ଗତା। ସେଦିନ ତମେ ପୁରୁଷ ଜୀବନରେ ନାରୀର ଆବଶ୍ୟକତା ଉପଲବ୍ଧି କରିବ ଆଉ ପତି ଜୀବନରେ ପତ୍ନୀର ଭୂମିକା କେତେ ମହତ୍ତ୍ୱପୂର୍ଣ୍ଣ, ତମେ ଅନୁଭବ କରିବ ଅଜୟ୍। ପ୍ରେମିକା ଓ ପତ୍ନୀ ଦୁଇଟି ସମାନ୍ତରାଳ ସରଳରେଖା ଅଜୟ୍ । ପ୍ରେମିକା, ପୁରୁଷ-ପ୍ରେମିକ ମନ-ଆକାଶରେ ରଂଗିନ୍ ସ୍ୱପ୍ନ ବୁଣିପାରେ, କୁହୁକ ରାଇଜର କାହାଣୀ ଲେଖିପାରେ, ମାତ୍ର ପତ୍ନୀ ସାରାଜୀବନ ଜଳି ଜଳି ସେଇ ରଂଗିନ୍ ସ୍ୱପ୍ନକୁ ସାକାର ରୂପ ଦିଏ। ହୃଦୟର ଗଭୀର ବିଶ୍ୱାସ ଦେଇ ଅଶାନ୍ତ-ସାଗରକୁ ସ୍ୱଚ୍ଛ-ସଲ୍ଲିଳା ନିର୍ଝରିଣୀରେ ପରିଣତ କରିପାରେ ପତ୍ନୀ ! ଦେହ, ମନକୁ ଉଜାଡ଼ି କୁହୁକ-କାହାଣୀକୁ ବାସ୍ତବ ରୂପ ଦିଏ। ପ୍ରେମିକା ଏକ ଉଚ୍ଛ୍ୱସିତ କବିତାର ମନଭୁଲା ପଂକ୍ତି ହେଇପାରେ; ହେଲେ ପତ୍ନୀ ଅମାପ-ସୁଖଭରା ପବିତ୍ର କାହାଣୀଟିଏ ଆଉ ତମଭଳି ପୁରୁଷମାନେ ପତ୍ନୀ ହୃଦୟର ସେଇ ବିଶ୍ୱାସଭରା ସମାପିକା ଗଳ୍ପଟିକୁ ଉପେକ୍ଷା କରି, ପ୍ରେମିକା ହୃଦୟର ଅର୍ଥହୀନ କବିତାଟିକୁ ଆପଣେଇ ନବାକୁ ସୁଖ ପାଆନ୍ତି। ନା, ଅଜୟ୍ !





# ବହ୍ନି ବଳୟ

ପହିଲି ମାଘର ଶୀତୁଆ ସକାଳ । ରେଜେଇ ତଳେ ଦେହ, ମୁହଁ, ଘୋଡ଼େଇ ଉଷୁମ ଟାଣୁଥିଲି । ହଠାତ୍ ମୋ ସ୍ତ୍ରୀ ପ୍ରଭା ମତେ ଖୁବ୍ ଜୋର୍‌ରେ ହଲେଇ ଦେଇ କହିଲେ, "ଏ ଉଠ ମ ! ଜଲ୍‌ଦି ଉଠ !"

ସେମିତି ମୁହଁ, ଦେହ ଘୋଡ଼େଇ ରଖି ମୁଁ କହିଲି, "ଓହୋ ! ଏ ଶୀତରେ ଏତେ ସକାଳୁ ମତେ ଉଠେଇବା କ'ଣ ଠିକ୍ ଦରକାର ? Please ତମେ ଯାଅ ପ୍ରଭା !" ପ୍ରଭା ବିଚଳିତ ସ୍ୱରରେ କହିଲେ, "କହିଲି ପରା ଉଠ, ଦୀପା Suicide କରିଛି ।"

ହଠାତ୍ ମୋ' ଦେହରେ ଯେମିତି କିଏ କରେଣ୍ଟ୍ ଲଗେଇଦେଲା । ରେଜେଇଟା ଫୋପାଡ଼ି ଦେଇ ଖଟ ଉପରୁ ଏକରକମ ଡେଇଁପଡ଼ିଲି । ମୁହଁଟା ଧୋଇଦେଇ ସିଧା ଶଶି ବଡ଼ବୋଉଙ୍କ ଘରକୁ ଚାଲିଗଲି ।

ଶଶୀ ବଡ଼ବୋଉ ଆମର ପଡ଼ୋଶୀ । ଦୀପା ତାଙ୍କରି ଝିଅ । ସେଠି ପହଞ୍ଚି ଦେଖିଲି ଗାଁ'ଲୋକଙ୍କ ଗହଳି ଜମିଯାଇଛି । ସମସ୍ତଙ୍କ ଆଖିରେ ଲୁହ । ଭିଡ଼ ଠେଲି ଘର ଭିତରକୁ ପଶିଗଲି । ବଡ଼ବୋଉ ଦୀପାର ଚାରିମାସର ଝିଅକୁ ଧରି ବାହୁନି ବାହୁନି କାନ୍ଦୁଥା'ନ୍ତି । ମତେ ଦେଖି ତାଙ୍କର କୋହ ଦ୍ୱିଗୁଣ ହେଲା । ଘର ଭିତରକୁ

ପଶିଯାଇ ଦେଖିଲି ଦୀପାର ଶବ ଫ୍ୟାନ୍‌ରେ ଝୁଲୁଛି । ଜିଭଟା ବାହାରକୁ ବାହାରି ପଡ଼ିଛି । ଦୀପାର ମୁହଁଟା ଅତି ବୀଭତ୍ସ ଦିଶୁଛି । ଦୀପାର ମୃତଦେହ ଦେଖି ମୁଁ ହତଭମ୍ବ ହେଇଗଲି । ଏଭଳି ଅସ୍ୱାଭାବିକ ମୃତ୍ୟୁର କାରଣ କ'ଣ ହେଇପାରେ ? ଗତକାଲି ମୁଁ ସମ୍ବଲପୁରରୁ ଆସି ଘରେ ପହଞ୍ଚିଲି । ସଂଜବେଳେ ଶଣୀ ବଡ଼ବୋଉଙ୍କ ଘରକୁ ବୁଲିବାକୁ ଆସିଥିଲି । ବଡ଼ବୋଉଙ୍କ ସହି ଗପସପ ହେଲାବେଳେ ଦୀପା ତା' ଟିକି ଝିଅଟିକୁ ଆଣି ମୋ' କୋଳରେ ଶୁଆଇଦେଇ ପଚାରିଥିଲା, "କହିଲ ରାଜୁଭାଇ ! ମୋ ଝିଅ କେମିତି ହେଇଛି ?" ମୁଁ ଦୀପାକୁ ଚିଢ଼େଇବାକୁ ଯାଇ କହିଥିଲି, "ଖୁବ୍ ସୁନ୍ଦର । ତୋ'ଠାରୁ ବି ବହୁତ ସୁନ୍ଦର । ଯା' ହେଉ ରକ୍ଷା ହେଇଛି । ତୋ ଭଳି ସିଂଘାଣିନାକୀ ହେଇଥିଲେ ନା କଥା ସରିଥାଆନ୍ତା ।"

ପିଲାବେଳେ ଦୀପା ନାକରୁ ସବୁବେଳେ ସିଂଘାଣି ବାହାରୁଥିଲା ବୋଲି ମୁଁ ତାକୁ ଚିଢ଼ଉଥିଲି । ମୋ କଥା ଶୁଣି ଦୀପା କୃତ୍ରିମ କ୍ରୋଧ ପ୍ରକାଶ କରି କହିଥିଲା, "ଉଁ ..... ମତେ ଚିଢ଼ାଇବା ଅଭ୍ୟାସ ତମର ଗଲାନି ରାଜୁଭାଇ ।"

ତା'ପରେ ମୁଁ ହଠାତ୍ ଦୀପାକୁ ପଚାରି ଦେଇଥିଲି, "କିଲୋ, ମୁଁ ଶୁଣୁଛି, ମାସେ ହେବ ଏଠି ଆସ୍ଥାନ ଜମେଇଛୁ । କ'ଣ ତୋ' ଶାଶୁଘରେ ତତେ ଖାଇବାକୁ ଦେଇପାରିଲେନି କି ? ବଡ଼ବୋଉ ! ଜଲ୍‌ଦି ଯ୍ୟା'କୁ ବିଦାକର । ନ ହେଲେ ପସ୍ତେଇବ ।"

ମୁଁ ଲକ୍ଷ୍ୟ କଲି, ମୋର ଏତିକି କଥା ଦୀପା ମୁହଁରୁ ସବୁତକ ରକ୍ତ ଶୋଷିନେଲା ଯେମିତି । ତା' ମୁହଁଟା ହଠାତ୍ ବିଷଣ୍ଣ ହେଇଗଲା । ସାଦା କାଗଜ ଭଳି ସଫେଦ୍ ଦିଶିଲା ଆଉ କିଛି ନ କହି ଝିଅକୁ ଖୁଆଇଦେବା ବାହାନା କରି ଦୀପା ଉଠି ଚାଲିଗଲା ।

ଦୀପା ଚାଲିଯିବା ପରେ ବଡ଼ବୋଉ କହିଲେ, "ମୁଁ କିଛି ବୁଝିପାରୁନି ରାଜୁ । ଚିଠି ନାହିଁ, ପତର ନାହିଁ । ହଠାତ୍ ଝିଅଟାକୁ ଧରି ଦୀପା ପହଞ୍ଚିଗଲା, ଆଉ ଶାଶୁଘରକୁ ଯିବା ନାଁ ଧରୁନି । ତା' ଶାଶୁଘର କାହାର ବି ଦେଖାଦର୍ଶନ ନାହିଁ କି ଖବରଅନ୍ତର ନାହିଁ । ଜୋଇଁ ପାଖରୁ ବି କିଛି ଚିଠିପତ୍ର ଆସୁନି । ଦୀପା ଯୋଉଠି

ବସୁଛି, ମୁହଁ ଶୁଖେଇ ବସୁଛି । ଆଗଭଳି ଆଉ ତା'ର ହସଖୁସି ନାହିଁ । ବେଳେ ବେଳେ ତା' ମୁହଁଟା କାନ୍ଦିଲା କାନ୍ଦିଲା ଦିଶେ । ପଚାରିଲେ କହେ, ''ମୋ' ଆସିବାଟା ତମକୁ ଯଦି ଭଲ ନ ଲାଗୁଛି, ତା' ହେଲେ ମୁଁ ଚାଲିଯିବି ବୋଉ ।'' ତା' ଆଖିରେ ଲୁହ ଦେଖି ଅଧିକ କିଛି ପଚାରିବାକୁ ସାହସ ହେଉନି । ବଡ଼ବାପା ତ ଏତେ ଦୂରରେ ଅଛନ୍ତି । ମାସେ କି ଦୁଇମାସରେ ଘରକୁ ଆସୁଛନ୍ତି । କାହାକୁ ବା ମୁଁ କ'ଣ କହିବି ? ମୁଁ ଭାବୁଛି ବୋଧହୁଏ ଦୀପା ଆଉ ତା' କୋଇଁ ଭିତରେ କିଛି ମନାନ୍ତର ଘଟିଛି । ତୁ ଟିକେ ତାକୁ ପଚାରି ବୁଝିବୁ । କାଳେ ସେ ତତେ ମନକଥା ଖୋଲି କହିପାରିବ । ଘରସଂସାର କଲେ ପଥର ପଡ଼ିଲେ ବି ସହିବାକୁ ପଡ଼େ । ତାକୁ ଟିକେ ବୁଝେଇଦବୁ । ମୋ ବାପାଟା ପରା ।''

''ମୁଁ କାଲି ଆସି ଦୀପା ସହିତ କଥାବାର୍ତ୍ତା କରିବି ।'' କହି ଚାଲିଆସିଲି । ଆଉ ଆଜି ସକାଳୁ ଦେଖୁଛି ଦୀପାର ଶବକୁ । ମନରେ ମୋର ଅନେକ ପ୍ରଶ୍ନବାଚୀ । ହଠାତ୍ ଦୀପାର ଆତ୍ମହତ୍ୟାର କାରଣ କ'ଣ ହେଇପାରେ ? ଗାଁ'ର କେତେଜଣ ଯୁବକଙ୍କ ସହାୟତାରେ ଦୀପାର ଶବକୁ ତଳେ ଶୁଆଇଦେଲି । ତା' ଶାଶୁଘରକୁ ଖବର ପଠାଗଲା । ମୋର ସନ୍ଦିଗ୍ଧ ଦୃଷ୍ଟି ଘର ସାରା ଘୂରି ବୁଲୁଥିଲା । ହଠାତ୍ କ'ଣ ଭାବି ଦୀପାର ଶୋଇବା ବିଛଣା ଟେକି ଦେଖିଲି ତା' ତଳେ ୫/୬ ଟି ଚିଠି ରହିଛି । ଚିଠିଗୁଡ଼ାକ ପଢ଼ିବାକୁ ଆରମ୍ଭ କଲି । ପ୍ରଥମ ଚିଠିଟି ଦୀପାର ସ୍ୱାମୀ ଅଜୟ ରାଉର୍‌କେଲାରୁ ଲେଖିଛି ।

''ଦୀପା ! ତମେ ଜାଣ ମୁଁ Steel plantର ଜଣେ ଉଚ୍ଚପଦସ୍ଥ କର୍ମଚାରୀ । ମୋର ଗୋଟାଏ ସ୍ୱତନ୍ତ୍ର ପଦମର୍ଯ୍ୟାଦା ରହିଛି । ସମାଜରେ ସ୍ୱତନ୍ତ୍ର ସ୍ଥାନ ରହିଛି । ମୋ ପାହ୍ୟାର ଅଫିସର୍‌ମାନେ କେତେ ବିଳାସପୂର୍ଣ୍ଣ ଜୀବନ ବିତଉଛନ୍ତି । ମୋର ମଧ୍ୟ ସେହିଭଳି କିଛି ଉଚ୍ଚ ଆକାଂକ୍ଷା ଅଛି । ମୁଁ ଗୋଟାଏ କାର୍ କିଣିବାକୁ ଚାହୁଁଛି । ଏଥିପାଇଁ ତମେ ଅନ୍ତତଃ ୫୦ ହଜାର ତମ ବାପାଙ୍କ ପାଖରୁ ଆଣିବାକୁ ଚେଷ୍ଟା କର । ସମାଜରେ ରହିବାକୁ ହେଲେ ସମସ୍ତଙ୍କ ସହିତ ସମାନ ହେବାକୁ ତ ପଡ଼ିବ । ତା' ଛଡ଼ା ତମ ବାପା ବାହାଘର ବେଳେ ଉପହାରସ୍ୱରୂପ କିଛି ଦେଇନାହାନ୍ତି । ଏତିକି କ'ଣ ଦେଇପାରିବେନି !''

ଦ୍ୱିତୀୟ ଚିଠିଟି ମଧ୍ୟ ଅଜୟର-- "ଦୀପା, ତମକୁ ବିବାହ କରି ମୁଁ ଭୁଲ୍ କରିଛି ବୋଲି ଏବେ ଅନୁତପ୍ତ। ମତେ ଜ୍ୱାଇଁ କରିବାକୁ କେତେ ଧନୀ, କେତେ ଲକ୍ଷପତି ଚାହିଁ ବସିଥିଲେ, ମାତ୍ର ମୁଁ କେଡ଼େ ମୂର୍ଖ, ତମକୁ ବିବାହ କଲି। ତମେ ଲେଖିଛ ଯେ, ବିଭାଘରବେଳେ ଆମ ଘର ତରଫରୁ କିଛି demand ନ ଥିଲା। ସେ କଥାଟା କ'ଣ ଖୋଲି କୁହାଯାଏ ? ମୋ ଭଳି ଗୋଟାଏ ଜ୍ୱାଇଁ କରିବାକୁ ହେଲେ ଜ୍ୱାଇଁର ସମ୍ମାନରକ୍ଷା ପାଇଁ ଯେ କିଛି ଉପହାର ଦେବାକୁ ହୁଏ, ସେ କଥା କ'ଣ ତମ ବାପା ଜାଣି ନ ଥିଲେ ? ମୁଁ କିଛି ଶୁଣିବାକୁ ଚାହେଁନା। ତମେ ଯଦି ପଚାଶ ହଜାର ଟଙ୍କା ନ ଆଣ, ତେବେ ମୋ ସହିତ ତମର କିଛି ସମ୍ପର୍କ ନାହିଁ ବୋଲି ଧରିନେବ। ଆଜି ବି ମତେ ଜ୍ୱାଇଁ କରିବାକୁ ଲୋକଙ୍କର ଅଭାବ ନାହିଁ। ମୁଁ ତମକୁ ମାସେ ସମୟ ଦଉଛି। ପଛରେ ମତେ ଦୋଷ ଦବନି।"

ତୃତୀୟ ଚିଠିଟି ଦୀପା ହାତଲେଖା। ବଡ଼ବାପାଙ୍କ ପାଖକୁ ଲେଖା ହୋଇଥିଲା। ହୁଏତ ଦେଇପାରିନି। ସେଥିରେ ଦୀପା ଲେଖିଥିଲା, "ବାପା ! କ'ଣ ଲେଖିବି ଭାବିପାରୁନି ! ଝିଅ ଜନ୍ମ କରି ଆପଣ ଭୁଲ୍ କରିଛନ୍ତି। ଆଉ ବଡ଼ଲୋକ ଘରେ ବନ୍ଧୁ ବାନ୍ଧି ଆପଣ ମସ୍ତବଡ଼ ଭୁଲ୍ କରିଛନ୍ତି ବାପା ! ଆପଣ କ'ଣ ଜାଣି ନ ଥିଲେ ବଡ଼ଘରେ ବନ୍ଧୁ ବାନ୍ଧିବାକୁ ହେଲେ, ଅଫିସର୍ ଜ୍ୱାଇଁ କରିବାକୁ ହେଲେ, ଝିଅର ରୂପ, ଗୁଣର ଆବଶ୍ୟକତା ନ ଥାଏ, ଥାଏ ମୋଟା ଅଙ୍କର ଯୌତୁକର ଚାହିଦା। ଆପଣ ମୋର ସୁଖ ଚାହିଁଥିଲେ ନା ବାପା ! ଦିନରାତି ଖଟି ଖଟି ଭଲରେ ଗଣ୍ଡେ ଖାଇବାକୁ ମିଳିବା ବି କଷ୍ଟ। ଚାକର, ଚାକରାଣୀଠାରୁ ବି ମୁଁ ହୀନ ହୋଇଯାଇଛି। ଶାଶୁ, ଶ୍ୱଶୁର, ନଣନ୍ଦଙ୍କର ପଦେ ପଦେ କଥାରେ ଗାଳିଗୁଲଜ, ଛିଗୁଲା କଥା ଶୁଣି ଶୁଣି ମୋ' ଛାତି ପଥର ପାଲଟିଗଲାଣି। ଶଂଖା, ସିନ୍ଦୂର ପିନ୍ଧି ବୋହୂ ହେବାର ଅସୁମାରି ସ୍ୱପ୍ନ, ଶାଶୁଘରର ଚାରିକାନ୍ଥ ଭିତରେ ଆକୁଳ ଚିତ୍କାର କରୁଛି। ପତ୍ନୀ ହେବାର ମନଲୋଭା କଳ୍ପନା ଆଖିଲୁହରେ ଝରିପଡୁଛି ବାପା। ମତେ ଆପଣ ଖୁବ୍ ଗେହ୍ଲା କରୁଥିଲେ ନା ! କାହିଁକି ଏ ବାହାଘରର ବେଡ଼ି ପିନ୍ଧେଇ ମତେ ଜୀଅନ୍ତା-ଶବଟିଏ କରିଦେଲେ ? ମୁଁ କ'ଣ ଆପଣଙ୍କ ଉପରେ ବୋଝ ହେଇଥା'ନ୍ତି ? ଟିକିଛୁଆଟା ଉପରେ ବି ସମସ୍ତେ ଦାଉ ସାଧୁଛନ୍ତି। କ୍ଷୀର ଟୋପାଏ

ବିନା ଛୁଆଟା କଲବଲ ହଉଛି । ବ୍ୱାଇଁଙ୍କ ପାଖରେ ସ୍ତ୍ରୀ, ପିଲାର ମୂଲ୍ୟ କିଛି ନାହିଁ । ମତେ ବାହା ହେଇ ସେ ତାଙ୍କ ବନ୍ଧୁମହଲରେ ମୁଣ୍ଡ ଟେକି ପାରୁନାହାନ୍ତି । ପଚାଶ ହଜାର ଟଙ୍କା ଆପଣଙ୍କଠାରୁ ଆଣିବା ପାଇଁ ମତେ ବାଧ୍ୟ କରୁଛନ୍ତି । ମୁଁ ଜାଣେ ବାପା ! ଘରଡିହଖଣ୍ଡିକ ବ୍ୟତୀତ ଆପଣଙ୍କ ପାଖରେ ଅନ୍ୟ କିଛି ସମ୍ବଳ ନାହିଁ । କେମିତି ଆପଣଙ୍କୁ ଟଙ୍କା ପାଇଁ କହିବି ? ମତେ ଏଠୁ ନେଇଯାଅ । ମତେ ବଞ୍ଚାଅ ବାପା । ମୁଁ ବଞ୍ଚିବାକୁ ଚାହେଁ ।''

ଚତୁର୍ଥ ଚିଠିଖଣ୍ଡିକ ଦୀପା ଶାଶୁଙ୍କର ଥିଲା, ''ଆଲୋ ଛୋଟଲୋକର ଝିଅ । ପନ୍ଦରଦିନ ହେବ ବାପଘରକୁ ଗଲୁଣି । ଟଙ୍କା ଆଣିବାକୁ କହି ଆମକୁ ଚିତାକାଟି ଚାଲିଗଲୁ । ବାପର ତ ଦମ୍ ନ ଥିଲା । ବାମନ ହୋଇ ଚନ୍ଦ୍ର ଧରିବାକୁ ହାତ ବଢ଼ଉଥିଲା କାହିଁକି ? କ'ଣ ଖାଲି ଝିଅର ରୂପକୁ ଆମେ ଚାଟିବୁ ? ଯଦି ଏ ଘରେ ସୁନାବୋହୂ ହବାର ଇଚ୍ଛା ଅଛି, ତେବେ ଏ ଚିଠି ପାଇବା ମାତ୍ରେ ପଚାଶ ହଜାର ଟଙ୍କା ଧରି ପହଞ୍ଚିବୁ । ନ ହେଲେ ଏ ଘରର ଦୁଆରମୁହଁ ସବୁଦିନ ପାଇଁ ତୋ' ଲାଗି ବନ୍ଦ ।

ପଞ୍ଚମ ଚିଠିଖଣ୍ଡିକ ଅଜୟର-- ''ଦୀପା ଟଙ୍କା ଆଣିବା ବାହାନାରେ ମୋ ବାପାମାଆଙ୍କୁ ଧୋକ୍କା ଦେଇ ବାପଘରେ କୋଉ ପ୍ରେମିକର ବାହୁରେ ପ୍ରୀତିର-ଝୁଲଣା ଝୁଲୁଛ ? ମୋ ପତ୍ନୀର ପରିଚୟ ନେଇ ରହିବାକୁ ହେଲେ, ଆମ ପରିବାରର ସମସ୍ତଙ୍କ କଥା ମାନିବାକୁ ତମେ ବାଧ୍ୟ । ଏହା ମୋର ଶେଷ ଚିଠି । ଆମ ସର୍ତ୍ତ ଯଦି ପୂରଣ ନ କର, ତେବେ ସବୁଦିନ ପାଇଁ ଆମ ଘରକୁ ଭୁଲିଯିବ ଆଉ ଆସନ୍ତା ତିଥିରେ ମୋ' ବାହାଘରର ନିମନ୍ତ୍ରଣ ପତ୍ର ପାଇବ । ହଁ, ମୁଁ ତମକୁ divorce କରିବିନି ଦୀପା । ତମକୁ ଆମ ଘରର ଚାକରାଣୀ କରି ରଖିବି । ତମେ ମତେ ଯେତିକି ଅପମାନିତ କରିଛ, ତା'ର ପ୍ରତିଶୋଧ ନେବି ।''

ଷଷ୍ଠ ଚିଠିଟି ୨/୩ ଦିନ ତଳର । ଦୀପାର ଶାଶୁ ସେ ଚିଠିଟି ଲେଖିଥିଲେ - ''ଆଲୋ ଅଲକ୍ଷଣୀ । ତୋର ତ ଭାରି ଗର୍ବ ! ଭାବିଛୁ ଏଠୁ ଚାଲିଯାଇଛୁ ବୋଲି ଆମେ ତତେ ଛାଡ଼ିଦବୁ ? ଶୁଣ୍ ! ତୁ ଗୋଟାଏ ଚରିତ୍ରହୀନା ଝିଅ । ଯାହାକୁ ଜନ୍ମ

ଦେଇଛୁ, ସେ ବି ଜାରଜ । ଆମଘରୁ ଟଙ୍କାପଇସା, ଗହଣାଗାଣ୍ଠି ନେଇ ଲୁଚି ପଳେଇଛୁ ବୋଲି ମୁଁ ଥାନାରେ ଏତଲା ଦେଇଛି । ଏଥର କୋଉ ବୋପା ତୋ' ପିଠିରେ ପଡ଼ିବ ମୁଁ ଦେଖିବି ।"

ଶେଷ ଚିଠିଟି ଦୀପାର । ସେଥିରେ ସେ ଲେଖିଥିଲା-- "ବାପା ! ବୋଉ ! ମତେ କ୍ଷମା କରିଦବ । ମୁଁ ଆଉ ପାରିଲନି । ଦୀର୍ଘ ବର୍ଷେ କାଳ ଅନେକ ଯନ୍ତ୍ରଣାକୁ ଛାତି ଭିତରେ ଚାପିରଖି ମୁଁ ବଞ୍ଚିବାକୁ ଚାହିଁଥିଲି । ହେଲେ, ସେମାନେ ମତେ ବଞ୍ଚିବାକୁ ଦେଲେନି । ଶେଷରେ ଅପବାଦ ଓ ଅପମାନର ଜାଲ ବିଛେଇ ସେମାନେ ମତେ, ଆପଣଙ୍କୁ, ଆମ ପରିବାରକୁ ଜାଳିପୋଡ଼ି ଛାରଖାର କରିଦେବାକୁ ପ୍ରତିଜ୍ଞାବଦ୍ଧ । ଏ ସବୁ କେବଳ ମୋ'ରି ପାଇଁ ବାପା । ମୁଁ ବଡ଼ ଭାଗ୍ୟହୀନା ଝିଅଟାଏ । ବଞ୍ଚିରହି ଛାତିର କଣ୍ଟା ହୋଇ ସାରା ଜୀବନ ଯନ୍ତ୍ରଣା ଦେବା ଅପେକ୍ଷା ମଶାଣିର ଜୁଇରେ ଜଳିଯିବାରେ ଅନେକ ଶାନ୍ତି । ମୋ' ଝିଅକୁ ତମରି ହାତରେ ସମର୍ପି ଦେଇଛି ବାପା ! ସେ ବଡ଼ ହୋଇ କାହାର ବଧୂ, କାହାର ପତ୍ନୀ ହେବାର ସୌଭାଗ୍ୟ ନ ପାଉ, ନିଜେ ନିଜର ପରିଚୟ ନେଇ ବଞ୍ଚିରହୁ ପଛକେ ହେଲେ ମୋ ଭଳି ଯେମିତି 'ବହ୍ନିବଳୟ' ଭିତରେ ତା' କୁଆଁରୀ ମନର ଆଶା ଓ ସ୍ୱପ୍ନ ଜଳି ନ ଯାଏ ବାପା !"

ଚିଠିଗୁଡ଼ାକ ପଢ଼ି ସାରିବାବେଳକୁ ମୋ' ଆଖିରେ ଲୁହ ଜମାଟ ବାନ୍ଧି ଯାଇଥିଲା । ବୁକୁ ଥରାଇ ଦୀର୍ଘଶ୍ୱାସଟିଏ ବାହାରି ଆସିଲା । ଦୀପା ଭଳି କେତେ ଝିଅର ଜୀବନ ଯେ ଏ ସମାଜର ବହ୍ନିବଳୟରେ ଜଳିଯାଉଛି, ତା'ର ହିସାବ ରଖୁଛି କିଏ ? ଯୌତୁକ ବିରୋଧୀ ଆଇନ୍ ଗଢ଼ାହେଉଛି । ଯୌତୁକ-ବିରୋଧୀ ସ୍ଲୋଗାନ୍ ଦିଆଯାଉଛି, ସଭାସମିତି ବସୁଛି । ହେଲେ ଏ କଳଙ୍କିଲଗା ସମାଜର ବୁଭୁକ୍ଷୁ ଉଦରରେ ସବୁ ଯେମିତି ବିଲୀନ ହେଇଯାଇଛି । ଅଜୟ ଓ ତା' ପରିବାର ଭଳି କେତେ ସୁଶିକ୍ଷିତ, ସୁସଭ୍ୟ ମଣିଷ ଭଦ୍ରତାର ମୁଖା ପିନ୍ଧି ନିଜ ସ୍ୱାର୍ଥର ଯଜ୍ଞବେଦୀରେ କେତେ ବଧୂଙ୍କୁ ଯେ ବଳି ଦେଉଛନ୍ତି, ସେ କଥା ବୁଝୁଛି କିଏ ?

ଦୀପାର ସବୁତକ ଚିଠି ପକେଟ୍‌ରେ ପୂରେଇ ବାହାରକୁ ବାହାରି ଆସିଲି । ଶବବାହକମାନେ ଶବ କାନ୍ଧେଇ ଚାଲିଥାଆନ୍ତି । ପୋଲିସ୍ ଆସି ପହଞ୍ଚି ଯାଇଥା'ନ୍ତି ।

ମୁଁ ମଧ୍ୟ ଶବ ଶୋଭାଯାତ୍ରାରେ ନିଜକୁ ସାମିଲ୍ କରିନେଲି । 'ରାମ ନାମ୍ ସତ୍ୟ ହେ'ର ତାଳେ ତାଳେ ମୁଁ ସ୍ୱତଃ କହି ଚାଲିଥାଏ, "ଆତ୍ମାହୁତି ଦେଇ ତୁ କ'ଣ ଏ ଯୌତୁକ ଦହନର ଶେଷ କରିପାରିଲୁ ଦୀପା ? ତୁ ଭୁଲ୍ କଲୁ । ଯନ୍ତ୍ରଣା, ଅପ୍ରବାଦ ଓ ଅପମାନକୁ ଡରି ପଳାୟନପନ୍ଥୀ ହେଲେ ସମାଜରେ ପରିବର୍ତ୍ତନ ଆସେନା । ସମାଜରେ ସଂସ୍କାର ଆଣିହୁଏନା । ମଣିଷମନର ଦୁର୍ବାର କାମନାର ବିନାଶ କରାଯାଇପାରେନା । ତୁ କ'ଣ ଜାଣି ନ ଥିଲୁ ଦୀପା, ଏ ସମାଜରେ ଅଧିକାର କେହି କାହାକୁ ଯାଚିଦେବାକୁ ଭଲପାଏନା । ନିଜର ହକ୍, ନିଜର ଅଧିକାର ଜୋର୍ କରି ଆଦାୟ୍ କରିବାକୁ ହୁଏ । ଦୀପା, ତୁ ତୋ' ଶାଶୁ-ଶ୍ୱଶୁର-ସ୍ୱାମୀ ଓ ସମାଜଗଢ଼ା ଯୌତୁକ-ଯଜ୍ଞକୁଣ୍ଡରେ ପତଙ୍ଗ ଭଳି ଝାଂପ ଦେଇଗଲୁ । ସେମାନଙ୍କ କାର୍ଯ୍ୟକଳାପକୁ ପ୍ରୋତ୍ସାହନ ଦେଇଗଲୁ । ତୁ ଦୁର୍ବଳା । ତୁ ନିରୀହା । ତୋ'ରି ଭଳି ଝିଅମାନଙ୍କୁ ତୁ କି ଶିକ୍ଷା ଦେଇଗଲୁ ? ତୁ ଯଦି ସବୁ ଦୁଃଖ, ସବୁ କଳଙ୍କକୁ ମଥାର ଚନ୍ଦନ କରିପାରିଥା'ନ୍ତୁ, ଏ ସମାଜ ବିରୋଧରେ ସଂଗ୍ରାମ କରି ବହ୍ନିବଳୟ ଭିତରୁ ନବଜନ୍ମ ନେଇପାରିଥା'ନ୍ତୁ, ତେବେ ହୁଏତ ନିକ୍ଷେପିତ ନାରୀଜାତି ପାଇଁ ସୁବର୍ଣ୍ଣସୀତା ପାଲଟିଥା'ନ୍ତୁ । ଦୀପା ଲୋ ! ତୋ' ଆତ୍ମାହୁତି ଏକ ଦୁର୍ବଳ ମଣିଷର, ଏକ ପରାଜିତ ଆତ୍ମାର ନିଷ୍ଫଳ ଗାଥା ବ୍ୟତୀତ ଆଉ କ'ଣ ହେଇପାରେ ?"

ଦୀପାର ଜୁଇ ଜଳିବା ପୂର୍ବରୁ ସବୁତକ ଚିଠି ପୋଲିସ୍ ଇନିସ୍ପେକଟର୍‌ଙ୍କ ହାତକୁ ବଢ଼େଇଦେଇ ମୁଁ ନୀରବରେ ଚାଲିଆସିଲି । ଆସିବାବେଳେ ଭାବୁଥିଲି, ସତରେ କ'ଣ ଆମ ଦେଶର ଆଇନ୍ ଦିନେ ଏ ସର୍ବଗ୍ରାସୀ ଯୌତୁକର ବହ୍ନିବଳୟରୁ ଏ ସମାଜକୁ ମୁକ୍ତ କରାଇପାରିବ ? ସତେ କ'ଣ ଏ ଦେଶର ନାରୀ ବୀରାଙ୍ଗନା ସାଜି ଏ ସମାଜରୁ ନାରୀ ନିର୍ଯ୍ୟାତନାର କଳଙ୍କିତ ପ୍ରଥାକୁ ବିଲୁପ୍ତ କରି ନାରୀଜାତିର ମାନସମ୍ମାନ ଓ ଅଧିକାରକୁ ସୁରକ୍ଷିତ ରଖିପାରିବ ! ! !



# ଲୁଚକାଳି



ଆଜି ତାରୁଣ୍ୟର ମଧ୍ୟାହ୍ନରେ ଅବତୀର୍ଣ୍ଣ ହେଇ ମୁଁ ଦେଖୁଛି ମୋର କୈଶୋରକୁ। ଆଦ୍ୟ କୈଶୋରର ନିଷ୍କପଟ ସରଳତାକୁ, ଶ୍ରାବଣର ଅଦିନିଆଁ ବର୍ଷା ଭଳି ରିମ୍‌ଝିମ୍ ଛନ୍ଦଚପଳପୁଷ୍ଟ କୈଶୋରକୁ। ଖୋଲା ଆକାଶର ସୀମାହୀନ ନୀଳିମା ତଳେ ହୋହଲ୍ଲା କରୁଥିବା କୈଶୋର ! ସାରାଦିନ ଲକ୍ଷ୍ୟହୀନ ଭାବେ ପ୍ରଜାପତି ପଛରେ ଧାଇଁବା, ତୋଟାଗହଳରେ ବୋହୂବୋହୂକା, ଡୁ ଡୁ, ଲୁଚକାଳି ଖେଳିବା ଆଉ ବଣବୁଦାରୁ ଅଣ୍ଟିଏ କଣ୍ଟେଇକୋଳି ତୋଳି ଘରକୁ ଫେରିବା। ସଂଜବେଳେ ଗାଁଦାଣ୍ଡରେ ଆବୁରୁଜାବୁରୁ ଗୀତ ଗାଇ ନାଚିକୁଦି ମଉଜ କରିବା। ଆଃ ! କିଏ ଫେରେଇଦବ ମୋ କୈଶୋରକୁ ! ଆଶୁଭାଇ ଥାଆନ୍ତେ କି ! ସେ ନିଶ୍ଚୟ ସାତତାଳ ଗହୀରରୁ ଖୋଜିଆଣି ମୋ' ହାତରେ ଅଜାଡ଼ି ଦେଇଥା'ନ୍ତେ ମୋ' ଇପ୍‌ସିତ କାମନାକୁ। ସେଇ ଆଶୁଭାଇ, ଯାହାଙ୍କୁ ମୁଁ ମୋର ପ୍ରଧାନ ଶତ୍ରୁ ବୋଲି ଭାବୁଥିଲି, ଘୃଣାରେ ନାକ ଟେକୁଥିଲି, କାରଣ ଲୁଚକାଳି ଖେଳିଲାବେଳେ ଆଶୁଭାଇ ମତେ ହିଁ ଖୋଜି ଖୋଜି ଚୋର କରିଦିଅନ୍ତି। ମୋ ଆଖିରେ ଅନ୍ଧପୁଟୁଳି ବନ୍ଧାହୁଏ ଆଉ ମୁଁ ସାତଥର ଚୋର ହେଇ କୁଣ୍ଡାପାଣି ଖାଏ। ସବୁ ସାଙ୍ଗସାଥୀ ମତେ ଥଟ୍ଟା କରନ୍ତି, ଚିଡ଼ାନ୍ତି। ଆଶୁଭାଇ ବି ଚୋରଣୀ କହି ଚିଡ଼ାନ୍ତି। ସେଇଥିପାଇଁ ତାଙ୍କ ଉପରେ ମୋର ଭାରି ରାଗ। ରାଗରେ କେତେଥର ମୁଁ ତାଙ୍କୁ ଆମ୍ପୁଡ଼ି କାମୁଡ଼ି ଦେଇଛି; ତଥାପି ସେ ରାଗ କରନ୍ତିନି। ସବୁଦିନ ସାଥିରେ ଖେଳିବାକୁ ଡାକିନିଅନ୍ତି। କହନ୍ତି-- "ହୁଣ୍ଡୀଟା କିଲୋ ! ଏ ପରା ଖେଳ। ତୁ କ'ଣ ସତସତିକା ଚୋର ଯେ ରାଗୁଛୁ !"

ମୋ ମନରେ ଆଶୁଭାଇଙ୍କ ପ୍ରତି ରାଗ ଓ ଘୃଣା ଯୁବତୀ ହେବା ପର୍ଯ୍ୟନ୍ତ କମି ନ ଥିଲା । ପାହାଚ ପରେ ପାହାଚ ଡେଇଁ ଆମେ କିଶୋର, କିଶୋରୀରୁ ଯୁବକ, ଯୁବତୀ ହେଲୁ । ଆମ ଲୁଚକାଳି ଖେଳରେ ବି ପୂର୍ଣ୍ଣଚ୍ଛେଦ ପଡ଼ିଲା; କିନ୍ତୁ ମୋ' ମନ ଆଶୁଭାଇଙ୍କ ପ୍ରତି ଟିକେ ବି ବଦଳିଲାନି । ତାଙ୍କୁ ଦେଖିଲେ ରାଗରେ ମୋ' ଦେହ ଥରିଉଠେ । ପିଲାଦିନେ ଚୋର ହେଇ କୁଣ୍ଡାପାଣି ଖାଇବାର ଅପମାନ ମନକୁ ବିଷାକ୍ତ କରିଦିଏ, ହେଲେ ଆଶୁଭାଇ ସେମିତି ନିର୍ବିକାର ! ଶାନ୍ତ, ତରଙ୍ଗହୀନ ସମୁଦ୍ରଟି ଭଳି ନିଥର । ମତେ କେବେ କେବେ କଣ୍ଢେଇକୋଳି, ଚମ୍ପା ବା କଇଁଫୁଲରୁ କିଛି ଆଦରରେ ଯାଚନ୍ତି । ଭଲମନ୍ଦ ପଚାରନ୍ତି । ମୁଁ କିନ୍ତୁ ମୁହଁ ଫଣ ଫଣ କରି ତାଙ୍କ ମନକୁ ବାଧିବା ଭଳି ଟାଣ ଟାଣ କଥା କୁହେ । ସେ ଦେଇଥିବା ଉପହାରକୁ ତାଙ୍କ ସାମ୍ନାରେ ଦଳିଚକଟି ଫିଙ୍ଗିଦିଏ ଆଉ କହେ, "ତମେ କାହିଁକି ପିଲାଟିଦିନରୁ ମୋ ପଛରେ ଲାଗିଛ କହିଲ ଆଶୁଭାଇ ! ଆଉ କେତେ ଅପମାନିତ ହେଲେ ତମ ମନ ଶାନ୍ତି ହେବ ? ତମ ସହିତ ପଦେ କଥା ହବାକୁ ମୁଁ ଘୃଣା କରେ ।"

ତଥାପି ଆଶୁଭାଇ ରାଗନ୍ତିନି । ତାଙ୍କ ମୁହଁରେ ସେମିତି ମନଛୁଆଁ ହସ ଲାଗିରହିଥାଏ । ଓଠରେ ଥାଏ ମମତାଭରା କଥା । କିଛିଦିନ ପରେ ଆଶୁଭାଇ କଲେଜ୍ ପଢ଼ା ଶେଷ କରି ସୈନ୍ୟବିଭାଗରେ ଯୋଗଦେଲେ ଓ ଟ୍ରେନିଂ ପାଇଁ ହାଇଦ୍ରାବାଦ ଚାଲିଗଲେ । ମୁଁ ମନେ ମନେ ଖୁସି ହେଲି । କାହିଁକି ଖୁସି ହେଲି, ସେ କଥା ଏବେ ବି ମୁଁ ବୁଝିପାରେନା । ସତେ ଯେମିତି ଜଣେ ବଡ଼ ପ୍ରତିଦ୍ୱନ୍ଦୀ ମୋ' ଜୀବନରୁ ଓହରିଗଲା ପରି ଲାଗୁଥାଏ । ଏହା ଭିତରେ ଛଅମାସ ବିତିଗଲା । ଆଶୁଭାଇ ଟ୍ରେନିଂ ସାରି ପୁଣି ଗାଁ'କୁ ଫେରିଆସିଲେ । ତାଙ୍କର ଫେରିଆସିବାଟା ମତେ କାହିଁକି କେଜାଣି ଭାରି ବାଧୁଥାଏ । ଗାଁ'କୁ ଆସିବା ପରେ ପୁଣି ମୋ' ପଛରେ ଲାଗିଗଲେ । ମୋ' ପାଠପଢ଼ା, ଭବିଷ୍ୟତ ଯୋଜନା ବିଷୟରେ ପଚାରନ୍ତି । ଇଛା ନ ଥିଲେ ବି ବିରକ୍ତ ହୋଇ ଉତ୍ତର ଦିଏ । ଆଶୁଭାଇ ସବୁଥର ଭଳି ନିର୍ଲିପ୍ତ ଭାବେ ଉତ୍ତର ହସିଦେଇ କହନ୍ତି, "ସତରେ କ'ଣ ତୁ ପିଲାଖେଳର ସେଇଦିନଗୁଡ଼ାକ ଭୁଲିନୁ ସୀମା ! ସେଇଟା ପରା ଖେଳ । ଏବେ ଆମେ ବଡ଼ ହୋଇଗଲେଣି । ଦୁନିଆକୁ

ବୁଝିବା, ପରସ୍ପରକୁ ଚିହ୍ନିବାର ବୟସ ବି ହେଇଗଲାଣି। ତଥାପି ତୁ ମତେ ବୁଝିପାରିଲୁନି ?" ମୁଁ ନିରୁତ୍ତର ରହେ।

ସେତେବେଳକୁ ଭାରତ ସୀମାନ୍ତରେ ପାକିସ୍ଥାନ ଯୁଦ୍ଧ ଆରମ୍ଭ କରିଦେଇଥାଏ। ହଠାତ୍ ଦିନେ ଆଶୁଭାଇଙ୍କ ଘରେ ରୀତିମତ କନ୍ଦାକଟା ଚାଲିଲା। ଗାଁ' ସାରା ସମସ୍ତଙ୍କ ମୁହଁରେ ସେଇ ଗୋଟାଏ କଥା, "ଆହା ! ଆଶୁ ଭଳି ପିଲାଟାଏ ଗାଆଁରେ କିଏ ଅଛି ? ଯୁଦ୍ଧକୁ ପଠାଇଦେଇ ବାପମାଆ କେମିତି ଧୈର୍ଯ୍ୟ ଧରିବେଟି! ଏ ଗାଁ'ର ରତ୍ନଟିଏ ଆଶୁ।" ଏ କଥା ଶୁଣି ମୋ' ମନ ବି ଟିକେ ଟିକେ ଦୁଃଖରେ ଆଉଟି ହେଉଥାଏ। ହେଲେ ବାହାରକୁ ମୁଁ ଥାଏ ପଥର ଭଳି କଠିନ। ଯୁଦ୍ଧକୁ ଯିବା ପୂର୍ବଦିନ ଆଶୁଭାଇ ଆମ ଘରକୁ ଆସିଲେ। ଗଲାବେଳେ ମତେ କହିଲେ, "କ'ଣ ସୀମା, ଆଉ ତୋ' ମନରେ ରାଗ ଅଛି ? ଏବେ ତ ବହୁତ ଖୁସି ହେବୁ। କାହିଁକି ନା ମୁଁ ତୋ'ଠାରୁ ବହୁତ ଦୂରକୁ ଚାଲିଯାଇଛି। ତତେ ଆଉ କିଏ ଚିଡ଼ାଇବ କହିଲୁ ? କିଏ ଜାଣେ ତୋ' ସହିତ ମୋର ଆଉ ଏ ଜୀବନରେ ଦେଖା ହେବ କି ନାହିଁ ? ଗାଁ'କୁ ଫେରି ମୁଁ ପୁଣି ସମସ୍ତଙ୍କୁ ଦେଖିପାରିବି କି ନାହିଁ ? କ'ଣ ଗଲାବେଳେ ଶେଷଥର ପାଇଁ ବି ତୁ ମତେ ହସି ହସି ପଦେ କଥା କହିବୁନି ?" ମୁଁ ମୁହଁ ବୁଲେଇନେଲି। ଆଶୁଭାଇ କହିଲେ, "ହଉ ନ କହ ! ମୁଁ ଜାଣେ, ମୁଁ ଗଲା ପରେ ତୁ ମତେ ନିଶ୍ଚୟ ଝୁରିହେବୁ। ମନେପକେଇବୁ। ପିଲାଦିନେ ତୋ ସହିତ ଲୁଚକାଳି ଖେଳୁ ଖେଳୁ ମୁଁ କେତେବେଳେ ଯେ ତୋ ସହିତ ସତସତିକା ଭଲପାଇବାର ଖେଳ ଖେଳି ବସିଲି, ମୁଁ ବି ବୁଝିପାରେନା ସୀମା !"

ଆଶୁଭାଇ ଚାଲିଗଲେ। ଏ ଥର ସତରେ ତାଙ୍କର ଅନୁପସ୍ଥିତି, ତାଙ୍କର କଥା, ତାଙ୍କ ସ୍ମୃତିରେ ମୋ ମନଟା ଭାଙ୍ଗି ଚୁର୍‌ମାର୍ ହେଇଗଲା ଯେମିତି ! ନିଜ ଅଜାଣତରେ ଆଖିରୁ ଲୁହ ଝରିପଡ଼ିଲା। ଗାଁ'ଟା ସାରା ଶୂନ୍‌ଶାନ୍ ଲାଗିଲା। ମନ କହୁଥିଲା, ଆଶୁଭାଇ ତମେ ଫେରିଆସ।" ଏଇଟା ମୋ ମନର ପ୍ରଥମପ୍ରେମ ହେଇପାରେ। କେମିତି କେଉଁ ମୁହୂର୍ତ୍ତରୁ ଆଶୁଭାଇଙ୍କ ପ୍ରତି ଥିବା ସବୁ ଘୃଣା, ରାଗ, ଅଭିମାନ, ନିଷ୍ଠୁରତା ଭିତରେ ଭଲପାଇବାର ଛୋଟ ଚାରାଗଛଟିଏ ଶାଖାପ୍ରଶାଖା ମେଲାଉଥିଲା।

ଯୁଦ୍ଧକୁ ଯିବାର ପନ୍ଦର ଦିନ ପରେ ତାଙ୍କଠାରୁ ଚିଠିଟିଏ ପାଇଲି । ସେଥିରେ ଲେଖାଥିଲା, "ସୀମା ! ପିଲାଦିନର ସେଇ ଚୋରଣୀ ସାଥୀକୁ ମୋ ଜୀବନସାଥୀ କରିନେବାକୁ ଚାହେଁ । ଯୁଦ୍ଧରୁ ଫେରିବା ପରେ ମୁଁ ତତେ ସଗୌରବ ରାଣୀ କରି ମୋ' ଘରକୁ ନେଇଆସିବାର ସ୍ୱପ୍ନ ଦେଖୁଛି । ମୋ' ସ୍ୱପ୍ନ କ'ଣ ସତ ହେବ ? ତୋର ଯଦି ଏଥିରେ ସ୍ୱୀକୃତି ଥାଏ, ତେବେ ଆଉ ମୋ ସହିତ ଓ ନିଜ ସହିତ ଲୁଚକାଳି ନ ଖେଳି ନିଶ୍ଚୟ ଉତ୍ତରଦେବୁ । ନ ହେଲେ ମୁଁ ଆଉ ମୋଟେ ଗାଁ'କୁ ଫେରିବିନି ।" ସତରେ ଆଶୁଭାଇ ଆଉ ଗାଁ'କୁ ଫେରିଲେନି । ମୋ' ମନର କଥା ତାଙ୍କ ପାଖରେ ପହଞ୍ଚିଲା ପୂର୍ବରୁ ସେ ଦେଶ ପାଇଁ ଶହିଦ୍ ହେଇଗଲେ । ମୋ ମନର ସମସ୍ତ ଆବେଗ ଓ ଅନୁରାଗ ବୋଳି ଆଶୁଭାଇଙ୍କୁ ଚିଠି ଖଣ୍ଡିଏ ଲେଖିଥିଲି । ମାତ୍ର ଚିଠି ପଠାଇବାର ଦୁଇ ଦିନ ପରେ ସୀମାନ୍ତରୁ ଫେରିଆସିଲା ଆଶୁଭାଇଙ୍କ ମରଶରୀର । ଶହ ଶହ ଗାଁ'ଲୋକଙ୍କର କରୁଣ ବିଳାପ ଆଉ ଫୁଲମାଳରେ ପୋତି ହେଇ ପଡ଼ିଥାଏ ତାଙ୍କ ଦେହଟା; ହେଲେ ମୁହଁଟା ସେମିତି ପୂର୍ବଭଳି ସତେଜ ଆଉ ହସ ହସ । ମୋ ଧୈର୍ଯ୍ୟର ବନ୍ଧ ଭାଙ୍ଗିଗଲା । ଲୁହବୋଳା ଆଖିରେ ମୁଁ ମୋ' ପ୍ରିୟ ଆଶୁଭାଇଙ୍କୁ ଚାହିଁରହିଥାଏ । ସେ ଯେମିତି କହୁଥା'ନ୍ତି, "ମୁଁ ଜିତିଗଲି ସୀମା ! ତୁ ହାରିଗଲୁ । ତୋ' ମନକଥା ମତେ ସିନା ଖୋଲି କହି ନ ଥିଲୁ; ହେଲେ ମୁଁ ତୋ ମନକୁ ଠିକ୍ ଚିହ୍ନିଥିଲି । ମୁଁ ଜାଣିଥିଲି ତୁ ନିଶ୍ଚୟ ଝୁରିବୁ । ମତେ ଖୋଜିବୁ । ହେଲେ ମୁଁ ତୋ'ଠାରୁ ଅନେକଦୂରକୁ ଚାଲିଯିବି । ଆଉ କେବେ ବି ଫେରିବିନି । ତୋ ସହିତ ଲୁଚକାଳି ଖେଳିବ କିଏ ? କିଏ ଖେଳିବ ଲୁଚକାଳି ?"

ଆମ ସମ୍ପର୍କ ଆରମ୍ଭ ହେଇଥିଲା ଲୁଚକାଳି ଖେଳରୁ । ଶେଷହେଲା ସେଇ ଲୁଚକାଳି ଖେଳରେ । ଏବେ ବି ମୁଁ ଆଶୁଭାଇଙ୍କ ସ୍ମୃତିକୁ ପାଥେୟ କରି ତାଙ୍କୁ ପରଜନ୍ମରେ ପାଇବାର ଆଶା ନେଇ ଏକୁଟିଆ ରହିଯାଇଛି । ତାଙ୍କ ସ୍ନେହକୁ ମୋ ମଥାର ସିନ୍ଦୂର, ତାଙ୍କ ଭଲପାଇବାକୁ ମୋ' ହାତର ଶଂଖା ବୋଲି ଧରିନେଇଛି । ପ୍ରତି ମୁହୂର୍ତ୍ତରେ ଭାବୁଛି, ଏଇ ବୋଧହୁଏ ଆଶୁଭାଇ ଆସିଯିବେ ଆଉ ମତେ ଚୋରଣୀ କରି ସାତଥର କୁଣ୍ଡାପଣି ପିଆଇଦେବେ; କିନ୍ତୁ ମୁଁ ଏଥର ରାଗିବିନି କି ମୁହଁ ଫୁଲେଇବିନି । ମୁଁ ମନଖୋଲି ତାଙ୍କ ସହିତ ଲୁଚକାଳି ଖେଳିବି ।



# ଅହଲ୍ୟା



ଚଉଁରା ମୂଳରେ ସଂଜବତୀଟା କେତେବେଳୁ ଲିଭିଗଲାଣି । ଚିତାଲାଗି ଅମାବାସ୍ୟା ଆଉ ଦୁଇଟା ଦିନ ରହିଲା । ଚାରିଆଡ଼େ ଖାଲି ଅନ୍ଧାର । ଆକାଶରେ କଳାମେଘ । ମେଘ ଫାଙ୍କରେ କେଉଁଠି କେମିତି ଗୋଟିଏ ଗୋଟିଏ ତାରା ଉଙ୍କି ମାରି ଆଖିମିଟିକା ମାରୁଛନ୍ତି । ନଡ଼ିଆଗଛ ଗହଳରେ ଝାପସା ଝାପସା ଦିଶୁଛି ପଧାନ ଘର । ସଂଜବତୀ ଦେଇ ସେତିକିବେଳୁ ଚଉଁରାମୂଳେ ପଥର ଭଳି ବସିରହିଛନ୍ତି କନକ । କେତେବେଳେ ଆକାଶକୁ ଶୂନ୍ୟ ଦୃଷ୍ଟିରେ ଅନଉଛନ୍ତି ତ କେତେବେଳେ ନିଜ ଚଉହଦିକୁ । ଘର ଭିତରେ ଶୁଭୁଛି ନାତିନାତୁଣୀଙ୍କ ହୋ ହାଲ୍ଲା, ପାଟିତୁଣ୍ଡ । ଦାଣ୍ଡପଟ ବତୀଟା ଜଳେଇବାକୁ ବୋଧହୁଏ ସମସ୍ତେ ଭୁଲିଯାଉଛନ୍ତି । ଭୁଲିଯାଇଛନ୍ତି ବି କନକଦେବୀଙ୍କ ଅନୁପସ୍ଥିତିକୁ । ଭଲରେ ଭଲରେ ଶୁଦ୍ଧିକ୍ରିୟା କାମ ସରିଗଲା । ଏଣିକି ନିଜ ନିଜ ଜାଗାକୁ ଫେରିଯିବାର ବେଳ । ଆଜି ଯୋଉ ଘର ଗହଳଚହଳରେ ଫାଟି ପଡୁଛି, ରାତି ପାହିଲେ, ସେଇଘରେ କାଉ, କୋଇଲିଟିଏର ବି ଶବ୍ଦ ଶୁଭିବନି । ଏକା ଏକା କନକଦେବୀ ଘର ଭିତରେ

ପଡ଼ିରହି ଖାଲି ପଛ କଥାକୁ ଭାବି ହେଉଥିବେ । ପୁଅବୋହୂ, ଝିଅଜ୍ୱାଇଁ ସମସ୍ତେ ନିଜ ନିଜ ଜିନିଷପତ୍ର ସକଡ଼ା ସକାଡ଼ି କରିବାରେ ବ୍ୟସ୍ତ । ପଧାନଘର ରେଡିଓରୁ ଭାସିଆସୁଛି ଅକ୍ଷୟ ମହାନ୍ତିଙ୍କ କଣ୍ଠରେ ଦରଦୀ ଗୀତଟି, "ନଦୀ ଫେରେ ସାଗରକୁ .... ପକ୍ଷୀ ଫେରେ ନୀଡ଼େ... ଫେରିବାର ବେଳ ହେଲେ .... ତମ କଥା କାହିଁ ଏତେ ମନେପଡ଼େ .....।

କନକଦେବୀଙ୍କର ପିଛିଲା କଥାସବୁ ଗୋଟି ଗୋଟି କରି ମନେପଡ଼ିଯାଉଛି । ୩୬ ବର୍ଷ ତଳେ ମୁଣ୍ଡରେ ଓଢ଼ଣା ଦେଇ ସବାରୀରୁ ଓହ୍ଲେଇ ପାଦ ଚିପି ଚିପି ସେ ଏ ଘରର ଏରୁଣ୍ଡିବନ୍ଧ ଡେଇଁଥିଲେ । ସେତେବେଳେ ତାଙ୍କର ବୟସ ମାତ୍ର ପନ୍ଦର ବର୍ଷ । ସ୍ୱାମୀ, ଶାଶୂଘର – ଏ ସବୁ ବିଷୟରେ ତାଙ୍କର କେତେ ବା ଜ୍ଞାନ ଥିଲା ! ମା', ଖୁଡ଼ୀ, ସାଇର ବଡ଼ବୋଉ, ଆଇ, ଭାଉଜମାନେ ଯାହା ଶିଖେଇଥିଲେ, ସେତିକି ହିଁ ସେ ଜାଣିଥିଲେ । ଶ୍ୱଶୁର ଥିଲେ ନେମାଳ ଗାଆଁର ଭାରି ନାମ୍‌ଜାଦା ବ୍ୟକ୍ତି । ଗାଁ'ର ଭଲମନ୍ଦ, ନ୍ୟାୟନିଶାପ ସବୁଥିରେ ତାଙ୍କୁ ଡାକରା ପଡ଼େ । ସ୍ୱାମୀ ସରୋଜ ପୋଲିସ୍ ସବ୍-ଇନିସ୍‌ପେକ୍ଟର ଚାକିରି କରୁଥିଲେ । ତାଙ୍କ ଚେହେରା ଯେମିତି, ଗୁଣ ସେମିତି ଥିଲା । ବାହାଘର ଠିକ୍ ହେବା ପରେ ସଂପର୍କୀୟ ଭାଉଜ ତାଙ୍କୁ ଥଟ୍ଟାରେ କହିଥିଲେ, "କନକ ଆମର କୋଉଠୁ ଯାଇ କୋଉଠି ପହଞ୍ଚିବ । ପୁଲିସିଆ ବର ତ ! କଥାରେ ନାଇଁ – ମାଛ ଖାଇବ ଇଲିସି, ଚାକିରି କରିବ ପୁଲିସି ।"

କନକଦେବୀଙ୍କର ଶାଶୁଘର ବହୁତ ସୁଖରେ ଦିନଗୁଡ଼ିକ ବିତିଯାଉଥିଲା । ଶାଶୁ, ଶ୍ୱଶୁର ଥିଲେ ଭାରି ସ୍ନେହୀ । ଝିଅ ଭଳି ତାଙ୍କୁ ଆଦରଯତ୍ନ କରୁଥିଲେ । ନଣନ୍ଦ, ଦିଅର ତ ସାନଭାଇ, ଭଉଣୀଙ୍କଠୁ ବଳେ । ନୂଆ ବାହା ହେଇ ଆସିବାବେଳେ କନକଦେବୀ ଅନେକ ଥର ନଣନ୍ଦ, ଦିଅରଙ୍କ ସାଙ୍ଗରେ ଲୁଡୁ ଖେଳୁ ଖେଳୁ ତଳ ଉପର ଭାଇଭଉଣୀଙ୍କ ଭଳି କଳି କରି ମୁହଁ ଫୁଲାଫୁଲି ଓ ମାଡ଼ଗୋଳ ବି ହେଇଛନ୍ତି । ଶାଶୁଘରର ସ୍ନେହମମତାରେ ସେ ନିଜ ଘରକଥା ବି ଭୁଲିଯାଆନ୍ତି । ବାପଘରକୁ ଗଲେ ଦିନେ ଦୁଇଦିନ ରହିଥିବେ କି ନାହିଁ ଶାଶୁଶ୍ୱଶୁର ହଇରାଣ ହଉଥିବେ, ଠିକ୍ ଭାବେ ଖିଆପିଆ କରୁ ନ ଥିବେ – ଏମିତି କେତେ ବାହାନା କରି ପଳେଇ ଆସିବାକୁ ବ୍ୟସ୍ତ ହେଇପଡ଼ନ୍ତି । କନକ ଶୁଣିଥିଲେ ପୋଲିସ୍‌ମାନେ

ବେରସିକିଆ । ତାଙ୍କ ହୃଦୟ ଭାରି କଠୋର; କିନ୍ତୁ ସରୋଜ ଥିଲେ ସଂପୂର୍ଣ୍ଣ ଓଲଟା । ସେ କନକଙ୍କୁ ପ୍ରାଣରୁ ବଳି ଅଧିକ ଭଲପାଉଥିଲେ । ସେତେବେଳେ ସରୋଜ ଢେଙ୍କାନାଳରେ ନିଯୁକ୍ତି ପାଇଥିଲେ । ପ୍ରତି ସପ୍ତାହରେ ଯେମିତି ହେଲେ ଘରକୁ ଆସି ବୁଲିଯାଆନ୍ତି । ବାହାଘରର ଗୋଟିଏ ବର୍ଷ ପରେ ବଡ଼ପୁଅ ମିଲୁର ଜନ୍ମ । ମିଲୁକୁ ଦୁଇବର୍ଷ ହେଲାପରେ ସରୋଜ କନକଙ୍କୁ ସାଙ୍ଗରେ ଢେଙ୍କାନାଳ ନେଇଯାଇଥିଲେ । କନକ ସେଠି ୨/୩ ମାସ ରହିଥିଲେ । ସେଇ ସ୍ୱଳ୍ପ ରହଣି ଭିତରେ ସରୋଜ ତାଙ୍କୁ ଅନେକ ନୂଆ ନୂଆ ଜାଗା ବୁଲେଇ ନେଇଥିଲେ । ସ୍ୱାମୀଙ୍କର ଅନାବିଳ ପ୍ରେମରେ ସେ ନିଜକୁ ସଂସାରର ସବୁଠୁ ସୁଖୀ ନାରୀ ବୋଲି ମନରେ ଗର୍ବ କରୁଥିଲେ । ଜନ୍ମଜନ୍ମାନ୍ତରରେ ଏ ଭଳି ସ୍ୱାମୀ ଓ ଏ ଭଳି ଶାଶୁଘରଟିଏ ପାଇବା ପାଇଁ ସେ ସକାଳେସଂଜେ ଠାକୁରଙ୍କ ପାଖରେ ପ୍ରାର୍ଥନା କରୁଥିଲେ ।

ସୁଖର ଦିନଗୁଡ଼ାକ ବୋଧହୁଏ ଘୋଡ଼ାପିଠିରେ ଚଢ଼ି ଆସେ ଆଉ ଚାଲିଯାଏ ଖୁବ୍ ଦ୍ରୁତଗତିରେ । ଚାଲିଯିବାବେଳେ ଛାଡ଼ିଯାଏ ଅଜସ୍ର ପାଦଚିହ୍ନ । ସେଇ ଚିହ୍ନକୁ ଗଣି ଗଣି ମଣିଷ ହିସାବ କରେ ଜୀବନର ଅଭୁଲା ମୁହୂର୍ତ୍ତ ସବୁକୁ ଆଉ ଦୁଃଖର ଦିନ ହାତୀ ଭଳି ଧୀର ମନ୍ଥର ଗତିରେ ଆସେ । ପ୍ରତି ପଦକ୍ଷେପରେ ଥାଏ ମଣିଷର ଧୈର୍ଯ୍ୟ, ସାହସ, ମନୋବଳ ଆଉ ସାଧନାର ପରୀକ୍ଷା । ସେଇ ପରୀକ୍ଷା ଦେଉ ଦେଉ କିଏ ହାରିଯାଏ ତ କିଏ ଜିତିଯାଏ । ଜୀବନକୁ କିଏ ଯୁଦ୍ଧ ବୋଲି ଭାବେ ତ କିଏ ସବୁଜିମାଭରା ବନାନୀଟିଏ ମନେକରେ ।

କନକଦେବୀ କ'ଣ ଜୀବନ-ଯୁଦ୍ଧରେ ହାରିଯାଇଛନ୍ତି ! ହାରିବା ଭିତରେ ତାଙ୍କର ବିଜୟ ହେଇନି ତ ! ହାରିଯାଇଥିବା ମଣିଷର ମନନେଇ ସେ ପାଷାଣୀ ଅହଲ୍ୟା ସାଜି ଅପେକ୍ଷା କରିନାହାନ୍ତି ତ ପୁଣି ଏକ ନୂଆ ଜନ୍ମକୁ ! ପୁଣି ଏକ ନୂତନ ଆତ୍ମାର ଦିଗନ୍ତକୁ!

ଅମା ଅନ୍ଧକାରର କାଳିମା ଭିତରେ ଦୂର ଅତୀତର ଏକ ଉଜ୍ଜ୍ୱଳ ଦୀପଶିଖା ତାଙ୍କୁ ଆତ୍ମବିସ୍ମୃତ କରୁଥିଲା । ବିତିଲା ଦିନର ହଜିଲା କଥା ତାଙ୍କ ମନରେ ଉଦ୍‌ବେଳନ ସୃଷ୍ଟି କରୁଥିଲା । ମିଲୁ ପରେ ପରେ ତାଙ୍କ କୋଳକୁ ଆସିଲେ ମିତା ଓ

ମିକୁ । ମିକୁକୁ ଯେତେବେଳେ ଚାରିବର୍ଷ, ସେତେବେଳେ ଶ୍ୱଶୁର ଚାଲିଗଲେ ଆରପାରିକୁ । ସେହିବର୍ଷ ସରୋଜବାବୁ ପ୍ରମୋଶନ୍ ପାଇ ଇନିସ୍‌ପେକଟର୍ ହୋଇ କୋରାପୁଟର ମାଲ୍‌କାନାଗିରି ଅଞ୍ଚଳକୁ ବଦଳି ହୋଇଗଲେ । ଶାଶୁବୋହୂ ଛୋଟଛୁଆ ତିନଜଣଙ୍କୁ ଧରି ଗାଁ'ରେ ଏକା ରହନ୍ତି । ସରୋଜ ଗାଁ'କୁ ଆସିଲେ ଶାଶୁ ବିକଳ ହେଇ କହନ୍ତି, "ତୁ ଆଉ ସେଠିକି ଯା'ନାରେ ରାଜା ! ସେଠି କୁଆଡ଼େ ସବୁବେଳେ ହଣାକଟା ଲାଗିଛି । ତୋର ଯଦି କ'ଣ ହେଇଯାଏ ...... ତୁ ପୋଲିସ୍ ଚାକିରି ଛାଡ଼ି ଦେ । ଆମର ଯେତିକି ଜମିବାଡ଼ି ଅଛି, ସେଥିରୁ ଯାହା ମିଳିବ ଆମେ ଦୁଃଖେସୁଖେ ଚଳିଯିବା ।"

ବୋଉ କଥା ଶୁଣି ସରୋଜ ହସନ୍ତି । ତାଙ୍କୁ ବୁଝାଇ କୁହନ୍ତି, "ବୋଉ ! ତୁ ପାଗଳୀଙ୍କ ଭଳି କାହିଁକି ହଉଛୁ ? ସେଠି କ'ଣ ଆଉ କେହି ମଣିଷ ରହୁନାହାନ୍ତି! ମରଣକୁ ଡରି ଆମେ ଘରକୋଣରେ ଲୁଚିରହିଲେ କ'ଣ ଅମର ହୋଇଯିବା ? ଯେତେବେଳେ ଯାହାର ମୃତ୍ୟୁବେଳ ଆସିବ, ତାକୁ କେହି ଅଟକାଇ ପାରିବେନି । ବାପାଙ୍କୁ କ'ଣ ଆମେ ଅଟକେଇ ରଖିପାରିଲେ ? ମୋର କିଛି ହବନି । ତୁ ଜମା ବ୍ୟସ୍ତ ହୁଅନା ।"

ଶ୍ୱଶୁରଙ୍କ ମୃତ୍ୟୁର ଠିକ୍ ବର୍ଷେ ପରେ ଶାଶୁ ବି ସଂସାର ଛାଡ଼ି ଚାଲିଗଲେ । ତାଙ୍କ କ୍ରିୟାକର୍ମ ସରିବା ପରେ ସରୋଜ କୋରାପୁଟ ଗଲେ । ଏତେବଡ଼ ଘରଟାରେ ଛୁଆ ତିନିଟାଙ୍କୁ ଧରି କେମିତି ଚଳିବେ ଭାବି କନକ କାନ୍ଦିପକାନ୍ତି । ସରୋଜ କୋରାପୁଟ ଗଲାବେଳେ ତାଙ୍କୁ ଅନେକ ବୁଝେଇସୁଝେଇ ସାନ୍ତ୍ୱନା ଦେଲେ । ବଡ଼ପୁଅ ମିଲୁ ସେତେବେଳେ ଅଷ୍ଟମଶ୍ରେଣୀରେ ପଢୁଥାଏ । ସରୋଜ ମିଲୁକୁ ବି ତାଗିଦ୍ କରିଦେଇ ଗଲେ ଯେମିତି ବୋଉର କିଛି ଅସୁବିଧା ନ ହୁଏ । ଗଲାବେଳେ କହି ଯାଇଥିଲେ, "ମୁଁ ମାସେ ପରେ ପୂରା ପନ୍ଦରଦିନ ଛୁଟି ନେଇ ଆସିବି । କଟକ କି ଭୁବନେଶ୍ୱରକୁ ବଦଳି ପାଇଁ ଚେଷ୍ଟା କରିବି, ନ ହେଲେ ୪/୬ ମାସ ଛୁଟିରେ ରହି ମନ୍ତ୍ରୀଙ୍କୁ ଦେଖା କରି ଅସୁବିଧା ଜଣେଇବି । ତୁମେ ଜମା ବ୍ୟସ୍ତ ହେବନି । ନିଜ ଦେହର ଯତ୍ନ ନେଉଥିବ । ପିଲାଙ୍କ ପାଠପଢ଼ା ପ୍ରତି ଦୃଷ୍ଟି ଦେବ ।"

ସେଇ ଗଲେ ଯେ ଗଲେ ଆଉ ଫେରିଲେନି । ଦେଇଥିବା ପ୍ରତିଶ୍ରୁତି ବି ରଖିଲେନି । ମିଛ କହି ତାଙ୍କୁ ଠକିଦେଲେ । ଜନ୍ମଜନ୍ମାନ୍ତରର ସାଥୀ ହେବାକୁ ଯିଏ କଥା ଦେଇଥିଲେ, ସେ ଗୋଟିଏ ଜନ୍ମର ସାଥୀ ହେବାକୁ ରହିଲେନି । ମଝିରାସ୍ତାରେ ଛିଡ଼ା କରେଇଦେଇ ତାଙ୍କୁ ଦିଗହରା କରିଦେଲେ । କନକଦେବୀଙ୍କ ଆଖିରୁ ଦୁଇଧାର ଲୁହ ଗଡ଼ିଆସିଲା । ସେତେବେଳେ ମାଲକାନାଗିରିରେ ମାଓବାଦୀମାନେ ବିଭିନ୍ନ ସ୍ଥାନରେ ଆତଙ୍କ ଖେଳାଇ ଦେଇଥା'ନ୍ତି । କେତେ ନିରୀହ ଲୋକ, କାର୍ଯ୍ୟରତ ପୋଲିସ୍ କର୍ମଚାରୀ ମାଓବାଦୀଙ୍କ ହାତରେ ଜୀବନ ଦେଉଥା'ନ୍ତି । ଏ କଥା ଶୁଣି କନକ ଖାଲି ଭଗବାନ୍‌ଙ୍କୁ ଡାକନ୍ତି । ତାଙ୍କ ହାତର ଶଂଖା, ମଥାର ସିନ୍ଦୂରର ରକ୍ଷା ପାଇଁ କେତେ ଉପାସବ୍ରତ କରୁଥା'ନ୍ତି; କିନ୍ତୁ ଫଳ କ'ଣ ହେଲା ? ଦିଅଁଦେବତା କେହି ତାଙ୍କ ଡାକ ଶୁଣିଲେନି । ଦିନେ ମାଲ୍‌କାନାଗିରିରୁ ଖବର ଆସିଲା ଇନିସ୍‌ପେକଟର୍ ସରୋଜ ମହାପାତ୍ର କମ୍ବିଂ ଅପରେସନ୍ ବେଳେ ନିଖୋଜ ହୋଇଯାଇଛନ୍ତି । ତାଙ୍କ ୩/୪ ଜଣ ସହକର୍ମୀ ମା'ଓବାଦୀଙ୍କ ହାତରେ ପ୍ରାଣ ହରାଇଛନ୍ତି; କିନ୍ତୁ ସରୋଜବାବୁଙ୍କ ଶବ ମିଳୁନି କି ସେ କେଉଁଠି ଅଛନ୍ତି ତା'ର ସନ୍ଧାନ ମିଳୁନି । ପୋଲିସ୍ ତଦନ୍ତ ଚାଲିଛି । କନକଦେବୀଙ୍କ ଉପରେ ଆକାଶଟା ଯେମିତି ଛିଡ଼ିପଡ଼ିଲା । ଛୁଆଗୁଡ଼ା ତାଙ୍କୁ ଜଡ଼ାଇଧରି ବିକଳରେ କାନ୍ଦୁଥାଆନ୍ତି । କନକଦେବୀଙ୍କ ଆଖିରେ ଲୁହ ନ ଥିଲା କି ତୁଣ୍ଡରେ ଭାଷା ନ ଥିଲା । ବନ୍ଧୁବାନ୍ଧବ, ସାଇପଡ଼ିଶା ସମସ୍ତଙ୍କ ଆଖିରେ ଲୁହ । ହିନ୍ଦୁଧର୍ମ ଅନୁଯାୟୀ ଶବ ନ ମିଳିବା ପର୍ଯ୍ୟନ୍ତ ଶୁଦ୍ଧିକ୍ରିୟା ହେଇପାରିବନି ବୋଲି ଗାଁ'ର ପୁରୁଖା ଲୋକମାନେ କହିଲେ । ସରୋଜବାବୁ ମିଳିଯିବେ— ଏଇ ପ୍ରତିଶ୍ରୁତି ସରକାରଙ୍କ ତରଫରୁ ଦିଆଗଲା ।

ବିଶ୍ୱାସ ଓ ଅବିଶ୍ୱାସର ଦୋ'ଛକିରେ ଛିଡ଼ାହେଇ କନକଦେବୀ ଆଶାର କିରଣଟିକକୁ ଆଶ୍ରା କରି ଦିନ ବିତାଇଲେ, ସେ ଯଦି ଥକିପଡ଼ିବେ କି ଭାଙ୍ଗିପଡ଼ିବେ ଛୁଆମାନଙ୍କର ଅବସ୍ଥା କ'ଣ ହେବ ? ଆଉ ସରୋଜ ଫେରିଆସି ପିଲାମାନଙ୍କର ଏ ଅବସ୍ଥା ଦେଖି ତାଙ୍କୁ ଯଦି ଭୁଲ୍‌ବୁଝନ୍ତି ! ଏଇ ଭାବନା ନେଇ ସେ ନିଜ ମନକୁ ଦୃଢ଼ କଲେ । ପିଲାଙ୍କର ସବୁ ଇଚ୍ଛାକୁ ପୂରଣ କରୁଥିଲେ । ବାପା ପାଖରେ ନ ଥିବାର ଦୁଃଖ ଓ ଅଭାବ ପିଲାମାନେ ଯେମିତି ଅନୁଭବ ନ କରନ୍ତି, ସେଥିପ୍ରତି

ସଚେତନ ରହିଲେ। ମନ ଭିତରଟା ଗୁମୁରି ଗୁମୁରି କାନ୍ଦୁଥିଲେ ବି ସେ ପିଲାଙ୍କ ଆଗରେ ଖୁସିଥିବାର ଅଭିନୟ କରନ୍ତି। ମିକୁଟା ବେଳେ ବେଳେ ପଚାରେ, "ବୋଉ, ବାପା କେବେ ଆସିବେ ?" ତାଙ୍କ ଆଖିରେ ଲୁହ ଜକେଇ ଆସେ। କି ଉତ୍ତର ବା ଦେବେ ? ନିଜେ ତ ସେ ଜାଣନ୍ତନି ସରୋଜ କେଉଁଠି ଅଛନ୍ତି। ମିକୁକୁ ଛାତିରେ ଜାବୁଡ଼ ଧରି କହନ୍ତି, "ବାପା ଖୁବ୍ ଶୀଘ୍ର ଆସିବେ। ତୁ ଠାକୁରଙ୍କୁ ଡାକ୍ !" ଆଶାୟୀ ମନରେ ସେ କେତେ କଳ୍ପନା କରିବସନ୍ତି। ଭାବନ୍ତି, ହଠାତ୍ ସରୋଜ ଆସି ପହଞ୍ଚିଗଲେ ସେ କ'ଣ କରିବେ ? ତାଙ୍କ ଛାତିରେ ମୁଣ୍ଡ ରଖି ମନଇଛା କାନ୍ଦିବେ। ମନକୁ ଶାନ୍ତ କରିବେ। ତାଙ୍କୁ ପୋଲିସ୍ ଚାକିରିରୁ ଇସ୍ତଫା ଦବାକୁ କହିବେ।

ସମୟଟା ନଈ ସୁଅ ଭଳି କେତେ ଶୀଘ୍ର ଗଡ଼ି ଯାଉଥାଏ। ଏହା ଭିତରେ ଚାରିବର୍ଷ ବିତିଗଲା; କିନ୍ତୁ ସରୋଜବାବୁଙ୍କୁ କିଛି ମିଳିଲାନି। ସାଇପଡ଼ିଶା ଟୁପୁରୁଟାପୁରୁ ହୁଅନ୍ତି, "ଏତେ ଦିନ ହେଲାଣି, ସେ କ'ଣ ଆଉ ବଞ୍ଚିଛି ?" କନକଙ୍କ କାନରେ ଏ କଥା ବାଜେ। ସେ ମନଇଛା କାନ୍ଦନ୍ତି। ନିଜ ଶଂଖାସିନ୍ଦୂରର ଚମକ ତ ଏ ଯାଏ କମିନି। ମଥାର ସିନ୍ଦୂରଟୋପାଟା ସେମିତି ଦାଉ ଦାଉ ହେଇ ଜଳୁଛି। ହାତର ନାଲିଚୁଡ଼ି ଏବେ ବି ଚିକ୍ ଚିକ୍ କରୁଚି। ତାଙ୍କ ମନ କହେ – ନା ସେ ବଞ୍ଚିଛନ୍ତି। ସେ ନିଶ୍ଚୟ ଫେରିଆସିବେ। ସେ ଯେଉଁଠି ଥାଆନ୍ତୁ ନା ପଛକେ ଠାକୁରେ ତାଙ୍କୁ ଭଲରେ ରଖିଥା'ନ୍ତୁ।

ଏମିତି ଏମିତି ବାରବର୍ଷ ବିତିଗଲା। ସମସ୍ତେ କହିଲେ କେହି ଯଦି ନିଖୋଜ ରହେ, ତା'ର ମୃତ୍ୟୁ ହେଇଛି କି ବଞ୍ଚିଛି କିଛି ଖବର ନ ମିଳେ, ତେବେ ବାରବର୍ଷ ପର୍ଯ୍ୟନ୍ତ ଅପେକ୍ଷା କରାଯାଏ। ତା'ପରେ ତାକୁ ମୃତ ବୋଲି ଧରାଯାଇ ତା'ର ଶୁଦ୍ଧିକ୍ରିୟା ସଂପନ୍ନ କରାଯାଏ। ଏ କଥା ଶୁଣି କନକଙ୍କ ଛାତି ଭିତରଟା ଫାଟିପଡ଼ିଲା। ସେ ଏ ନୀତିନିୟମକୁ ମାନିବାକୁ ପ୍ରସ୍ତୁତ ନ ଥିଲେ। ଏଣୁ ସେ ଜିଦ୍ ଧରି ବସିଲେ ଯେ ବିଧବା ହେବେନି କି ସରୋଜବାବୁଙ୍କର ଶୁଦ୍ଧିକ୍ରିୟା ହେବନି। ପୋଲିସ୍ ବିଭାଗ ଏବେ ବି ତାଙ୍କ ଅନୁସନ୍ଧାନର ଫଳାଫଳ କିଛି ଜଣାଇନାହାନ୍ତି। ତାଙ୍କ ଅନ୍ତରାତ୍ମା କହୁଛି ସରୋଜବାବୁ ନିଶ୍ଚୟ ଫେରିଆସିବେ। କନକଙ୍କ ଜିଦ୍ ଆଗରେ ଏବଂ ତାଙ୍କ ଆକୁଳ ଅନୁନୟ ବିନୟ ପାଖରେ ସମସ୍ତେ ମୁଣ୍ଡ ନୁଆଁଇଲେ।

କନକ ପ୍ରତିଦିନ ସକାଳ ହେବାଠାରୁ ରାତି ପର୍ଯ୍ୟନ୍ତ ମନେ ମନେ ଗୁଣି ହୁଅନ୍ତି ଆଜି ନିଶ୍ଚୟ ତାଙ୍କ ସ୍ୱାମୀ ଫେରିଆସିବେ । କୋଉଠି କିଛି ଅସୁବିଧାରେ ପଡ଼ିଛନ୍ତି; ନ ହେଲେ ସେ ତାଙ୍କ ପରିବାରକୁ ନ ଦେଖି ଏତେଦିନ ରହିବା ଲୋକ ନୁହନ୍ତି । ତାଙ୍କ ମନକୁ ଅନେକ ପାପକଥା ଆସେ । ପୁଣି ସେ ନିଜକୁ ନିଜେ ବୁଝେଇ ଦିଅନ୍ତି । ଠାକୁରଙ୍କ ପାଖରେ କେତେ କ'ଣ ମନାସନ୍ତି, "ଠାକୁରେ ! ମୋ' କାଚସିନ୍ଦୂରକୁ ବଜ୍ର କରିଦିଅ । ମୋ ଇହକାଳ, ପରକାଳର ଦେବତାଙ୍କୁ ଫେରେଇଦିଅ ।" ଦୁନିଆଯାକର ବ୍ରତଉପବାସ କରନ୍ତି । ଠାକୁରଙ୍କୁ ଗୁହାରି କରନ୍ତି, "ସେ ପଛେ ଅକର୍ମଣ୍ୟ ହେଇ ଫେରନ୍ତୁ, କିନ୍ତୁ ଫେରିଆସନ୍ତୁ !" ପତି ବିନା ପତ୍ନୀର ଏ ସମାଜରେ ସ୍ଥିତି କ'ଣ ଅଛି ? ସ୍ୱାମୀ ପଛେ ବେରୋଜଗାରିଆ ହେଇଥାଉ, ସ୍ତ୍ରୀ'କୁ ଭଲ ନ ପାଉ; କିନ୍ତୁ ଆମ ସମାଜରେ ସ୍ୱାମୀ ହିଁ ସ୍ତ୍ରୀର ମୂଲ୍ୟବାନ୍ ଅଳଙ୍କାର । ଆମ ସମାଜରେ ବିଧବାର ଜୀବନ କେତେ ଦୁର୍ବିସହ, ସେ କଥା କନକ ଭଲଭାବେ ବୁଝିଛନ୍ତି ।

ଏହା ଭିତରେ ବଡ଼ପୁଅ ରାଉର୍‌କେଲା ଷ୍ଟିଲ୍ ପ୍ଲାଣ୍ଟ୍‌ରେ ସୁପରଭାଇଜର୍ ଚାକିରି ପାଇଗଲା । ବାପାଙ୍କ ଶେଷକଥାକୁ ଆଜିଯାଏ ସେ ଅକ୍ଷରେ ଅକ୍ଷରେ ପାଳନ କରି ଆସିଛି । ସାନଭଉଣୀର ବାହାଘର ବହୁ ଧୂମ୍‌ଧାମ୍‌ରେ କଲା । ନିଜେ ମଧ୍ୟ ବିବାହ କଲା । ବର୍ତ୍ତମାନ ସ୍ୱାମୀ, ସ୍ତ୍ରୀ ଦୁହେଁ ଦୁଇଟି ପିଲାଙ୍କୁ ନେଇ ରାଉର୍‌କେଲାରେ ରହୁଛନ୍ତି । ସାନଭାଇ ମିକୁ ଇଂଜିନିୟରିଂ ପାସ୍ କରି ବାଙ୍ଗାଲୋର୍‌ରେ ଚାକିରି ପାଇଗଲା । ଦୁଇପୁଅ, ବୋହୂ ବୋଉକୁ ଯେତେ ବୁଝେଇଲେ ଗାଁ'ରେ ଏକା ନ ରହି ତାଙ୍କ ପାଖରେ ରହିବାକୁ, କନକଦେବୀଙ୍କର ଏକା ଜିଦ୍ ସେ ବାପାଙ୍କ ଫେରିବା ପର୍ଯ୍ୟନ୍ତ ଏଇ ଗାଁ'ରେ ହିଁ ରହିବେ ।

ଚାହୁଁ ଚାହୁଁ ପନ୍ଦରବର୍ଷ ବିତିଗଲା । ଗାଁ'ର ମୁଖିଆଲୋକମାନେ ଏଥର ଅଡ଼ିବସିଲେ ଆଉ ଅପେକ୍ଷା କରିବାଟା ଠିକ୍ ନୁହେଁ । ଯେମିତି ହେଲେ ସରୋଜଙ୍କର ଶୁଦ୍ଧିକ୍ରିୟା କରିବାକୁ ହେବ । ଦୁଇପୁଅ, ବୋହୂ, ଝିଅଜ୍ୱାଇଁ, ନାତିନାତୁଣୀ, ବନ୍ଧୁବାନ୍ଧବ ସମସ୍ତେ ଆସିଲେ । କନକଙ୍କୁ ବୁଝାସୁଝା କରିବାପରେ ନିଜର ଅନିଚ୍ଛା ସତ୍ତ୍ୱେ ସେ

ରାଜି ହେଲେ। ସମାଜର ନୀତିନିୟମକୁ ନ ମାନିଲେ ତାଙ୍କୁ ବାସନ୍ଦ ହେବାକୁ ପଡ଼ିବ। ତାଙ୍କ ପିଲାମାନେ ସମାଜ ଆଗରେ ଅପମାନିତ ହେବେ। ଯେଉଁଦିନ ତାଙ୍କ ହାତରୁ ଶଂଖା କଢ଼ାଗଲା, ମୁଣ୍ଡରୁ ସିନ୍ଦୂର ଲିଭେଇ ବିଧବା ବେଶରେ ସଜେଇ ଦିଆଗଲା, ସେଦିନ ତାଙ୍କ ଆଖିରୁ ଲୁହ ଝରି ନ ଥିଲା। ପନ୍ଦର ବର୍ଷ କାନ୍ଦି କାନ୍ଦି ସତେ ଯେମିତି ତାଙ୍କ ଆଖିରୁ ସବୁ ଲୁହ ଲହୁ ଶୁଖିଯାଇଛି। ସେ ମୂକ ପାଲଟିଗଲେ। କାହାକୁ ଗୁହାରି କରିବେ ? କିଏ ବୁଝିବ ତାଙ୍କ ମନର ବେଦନା ? ଦିଅଁଦେବତା କେହି ତାଙ୍କର ଗୁହାରି ଶୁଣିଲେନି। ସମସ୍ତେ ଖାଲି ତାଙ୍କ ଆଗରେ ସମାଜଗଢ଼ା ନୀତିନିୟମର ଉଦାହରଣ ବାଢ଼ିବସିଲେ। ମନେ ମନେ ସେ କହୁଥିଲେ, "ତମେ କୋଉଠି ଅଛ, ଫେରିଆସ। ଦେଖ, ଯୋଉ ହାତରେ ତମେ ଶଂଖା ପିନ୍ଧେଇଥିଲ, ମଥାରେ ସିନ୍ଦୂର ଭରିଥିଲ, ସେ କପାଳ ଆଜି ଶୂନ୍ୟ। ସେ ହାତ ଆଜି ଶୂନ୍ୟ। ତମେ କହୁଥିଲ ନା – କନକ ତମର ଏ ବଳିଲା ବଳିଲା ହାତକୁ ନାଲିଚୁଡ଼ି ବେଶ୍ ମାନୁଛି ଆଉ କପାଳରେ ଦାଉ ଦାଉ କରୁଥିବା ସିନ୍ଦୂର ଟୋପାଟା ମତେ ଦୀର୍ଘାୟୁ କରିଦେଇଛି। ଦେଖିବ, ଏମିତି ଶଂଖାସିନ୍ଦୂର ନେଇ ତମେ ଅହ୍ୟ ସୁଲକ୍ଷଣୀ ହେଇ ଚାଲିଯିବ। ମୁଁ ତୁମକୁ ଝୁରିହେଇ କଷ୍ଟ ପାଇବି ପଛକେ, ତମକୁ କେବେ ଏକା କରି ଦୁନିଆଁର ଝଡ଼ଝଞ୍ଜାକୁ ସାମ୍ନା କରିବାକୁ ଦେବିନି। ତମକୁ ରାଜରାଣୀ ବେଶରେ ସଜେଇ ମୁଁ ବିଦାୟ ଦେବି। କାରଣ ମୁଁ ତମକୁ ଜନ୍ମଜନ୍ମାନ୍ତରର ସାଥୀ ପାଇବାକୁ ଚାହେଁ।"

ସବୁ ଓଲଟପାଲଟ ହେଇଗଲା। ସବୁ କଥା କଥାରେ ହିଁ ରହିଗଲା। ସବୁ ପ୍ରତିଶ୍ରୁତି ପାଣିର ଗାର ପାଲଟିଗଲା। ଅନ୍ଧାର ଭିତରେ କନକ ନିଜ ହାତଦୁଇଟାକୁ ଅଣ୍ଡାଳି ପକାଇଲେ। କପାଳରେ ହାତ ମାରିଲେ। ସବୁ ଶେଷ ହେଇଗଲା। ବିଧବାର ଜୀବନ ନେଇ ସେ ବଞ୍ଚିବେ କେମିତି ? କାହାପାଇଁ ଏ ଅଲୋଡ଼ା ଜୀବନଟାକୁ ଧରି ପଡ଼ିରହିବେ ?

ପୁଅବୋହୂ, ଝିଅଜ୍ୱାଇଁ ସମସ୍ତେ ଆଜି ତାଙ୍କୁ ବୁଝେଇ ବୁଝେଇ ଥକିପଡ଼ିଲେ। ସାଇପଡ଼ିଶା, ବନ୍ଧୁବାନ୍ଧବମାନେ ପରାମର୍ଶ ଦେଲେ ଗାଁ'ରେ ଆଉ ନ ରହି

ପୁଅବୋହୂଙ୍କ ସାଙ୍ଗରେ ଚାଲିଯିବାକୁ । ଗାଁ'ରେ ଏକା ପଡ଼ିରହି ହନ୍ତସନ୍ତ ହେବା ଅପେକ୍ଷା ଶେଷଜୀବନ ଅରାମ୍‌ରେ କଟେଇବାକୁ ।

କନକଦେବୀ ସେଇ ଏକାଜିଦ୍‌ – ସେ ଗାଁ' ଛାଡ଼ି କୁଆଡ଼େ ଯିବେନି । ସରୋଜଙ୍କ ହାତଧରି ସେ ଏ ଘରକୁ ଆସିଥିଲେ, ସେଇ ସରୋଜଙ୍କ ହାତରେ ତାଙ୍କ କୋକେଇ ସଜା ହେବ । ସେ ଏ ଘରର ଏରୁଣ୍ଡି ଡେଇଁ ମଶାଣିକୁ ଯିବେ । ତାଙ୍କର ବିଶ୍ୱାସ କେବେ ଭୁଲ୍ ହେବନି । ସରୋଜ ତାଙ୍କୁ ଯେଉଁ କଥା ଦେଇଥିଲେ, ସେ ନିଶ୍ଚୟ ତାଙ୍କ କଥା ରକ୍ଷା କରିବେ । ସେ ନିଶ୍ଚୟ ଦିନେ ନା ଦିନେ ଫେରିଆସିବେ । କନକ ଯଦି ଘର ଛାଡ଼ି ଚାଲିଯାଆନ୍ତି, ସରୋଜ ଫେରିଆସିଲେ କ'ଣ ଭାବିବେ ? ଭାବିବେ କନକର କ'ଣ ତାଙ୍କ ଉପରେ ବିଶ୍ୱାସ ଓ ଭରସା ନ ଥିଲା ! ତାଙ୍କୁ ଟିକେ ଅପେକ୍ଷା ନ କରି ଘରଛାଡ଼ି ଚାଲିଗଲେ ।

କେତେ ସ୍ମୃତି ଜଡ଼ି ରହିଛି ଏ ଘରର ପ୍ରତ୍ୟେକ କୋଣ, ଅନୁକୋଣରେ । ଏ ଘରର ପ୍ରତିଟି ଧୂଳିକଣାରେ ତାଙ୍କ ଦାମ୍ପତ୍ୟ ଜୀବନର ମିଠା ମିଠା ବାସ୍ନା ତାଙ୍କୁ ଏବେ ବି ବିଭୋର କରୁଛି । ଏଇଘରେ ସ୍ୱାମୀଙ୍କ ସହିତ ଦେଖିଥିବା ସୁନେଲି ସ୍ୱପ୍ନ ତାଙ୍କ ମନକୁ ଉଦ୍‌ବେଳିତ କରୁଛି । ତାଙ୍କ ପାଇଁ ଏ ଘର ସ୍ୱର୍ଗ । ଏ ଗାଁ' ମାଟି ନନ୍ଦନକାନନ । ତାଙ୍କର ସବୁସୁଖ, ସବୁଶାନ୍ତି ଏଇଠି । ସେ ଏଠୁ ଯିବେ କୁଆଡ଼େ ? ଆଉ ତାଙ୍କର ଗଭୀର ବିଶ୍ୱାସ ଅଛି ସରୋଜ ଫେରିଆସିବେ । ପୁଣି ତାଙ୍କୁ ନବବଧୂ ବେଶରେ ସଜେଇଦେବେ ଆଉ କନକ ପନ୍ଦର ବର୍ଷର ମାନ, ଅଭିମାନ, ବେଦନା ବାଡ଼ିବସିବେ ସ୍ୱାମୀଙ୍କ ଛାତିରେ ମଥା ଚାପି । ସରୋଜଙ୍କୁ ଦେଖିଲାମାତ୍ରେ ୧୫ ବର୍ଷର ଦୁଃଖ, ଯନ୍ତ୍ରଣା, ବେଦନା ସବୁକିଛି ନିମିଷକେ ସୁଖର ସାଗର ପାଲଟିଯିବ । ସେ ଘର, ଏ ଗାଁ' ଛାଡ଼ି କେବେ କ'ଣ ଯାଇପାରିବେ ? ତ୍ରେତୟାଯୁଗର ଅଭିଶପ୍ତା ଅହଲ୍ୟା ଭଳି ପାଷାଣୀ ପାଲଟିଯିବେ ପଛକେ କୁଆଡ଼େ ଯାଇପାରିବେ ନାହିଁ ।





# ଶେଷ କଥା

ଗଳ୍ପବହିଟିରେ ଗୋଟି ଗୋଟି ଗଳ୍ପରେ ନାରୀଟିର ଶତକୋଟି ବେଦନା ସୁତାଖିଅ ପରି ଛନ୍ଦିହୋଇ ରହିଛି । ଗଳ୍ପଗୁଡ଼ିକର ସମାପ୍ତି ପରେ ଆଉ କିଛି ଅକୁହା ରହିଗଲା ଭଳି ମନେହଲା-- ତାହା ହିଁ ତ ଗଳ୍ପର ବୈଶିଷ୍ଟ୍ୟ !

ପ୍ରମିଳାଙ୍କର ଏ ଗଳ୍ପଗୁଚ୍ଛ ପ୍ରଥମ ଅର୍ଘ୍ୟ; ତଥାପି ଲାଗୁଛି ତାଙ୍କର ହୃଦୟରେ ଏସବୁ ଆଗରୁ ଲେଖା ହୋଇ ରହିଥିଲା କି ? ଏଇ ଅହଲ୍ୟାରେ ସେ ତାକୁ ମୂର୍ତ୍ତରୂପ ଦେଇଛନ୍ତି ହୁଏତ ! ନାରୀ ମନର ଅନ୍ତର୍ଦାହ ତାଙ୍କରି ଅନ୍ତରାତ୍ମାରେ ଗୁଞ୍ଜରିତ ହୋଇଛି ପ୍ରତ୍ୟେକ ଗଳ୍ପ ମାଧ୍ୟମରେ । ମତେ କିନ୍ତୁ ସବୁଠୁ ଭଲଲାଗିଲା 'ଲୁଚକାଳି' ଗପଟି । ଯାହା ବି ହେଉ ପ୍ରମିଳାଙ୍କର ଜୀବନର ଗୋଟିଏ ପାଖେ ଶିକ୍ଷାଦାନର କାର୍ଯ୍ୟ, ଅନ୍ୟପଟେ ଦିକିଦିକି ଜଳୁଛି ପ୍ରତିଭାର ଛୋଟ ଦୀପଟିଏ ।

ସେ ଦୀପ ଆହୁରି ଜଳିଉଠି ସମଗ୍ର ସାହିତ୍ୟ ସମାଜକୁ ଆଲୋକିତ କରୁ । ସେ ତାକୁ ଜଳିବାକୁ ଦିଅନ୍ତୁ, ତା'ହେଲେ ସମଗ୍ର ନାରୀ ସମାଜ ଆଲୋକିତ ହେବ । ତାଙ୍କର ଲେଖା ଦୀର୍ଘାୟୁ ହେଉ, ସେ ଦୀର୍ଘାୟୁ ହୁଅନ୍ତୁ....ଏତିକି ମୋର ଈଶ୍ୱରଙ୍କ ନିକଟରେ କାମନା ।

ଅନସୂୟା ନନ୍ଦ
ସଂପାଦିକା 'ସଂସାର'



## ଶ୍ରୀମତୀ ପ୍ରମିଳା ପତି

ଜନ୍ମ - ୧୯୫୯ ମସିହା

ଜନ୍ମସ୍ଥାନ - ବାଲିଆ, କେନ୍ଦ୍ରାପଡ଼ା

ପିତା - ୰ ସଚ୍ଚିଦାନନ୍ଦ ପତି

ମାତା - ଶ୍ରୀମତୀ ବିଦ୍ୟୁତ୍‌ଲତା ପତି

ସ୍ୱାମୀ - ଶ୍ରୀଯୁକ୍ତ ରବି ମିଶ୍ର

ଶ୍ରୀମତୀ ପ୍ରମିଳା ପତି ଏକାଧାରରେ ଜଣେ ସୁଗୃହିଣୀ, ଆଦର୍ଶ ଜନନୀ, ସ୍ନେହବତ୍ସଳା ଶିକ୍ଷୟିତ୍ରୀ, କବି, ଗାଳ୍ପିକା, ଗୀତିକାର ଓ ନାଟ୍ୟକାର ଭାବେ ସୁପରିଚିତା । ତାଙ୍କ ଲେଖନୀନିଃସୃତ ବହୁ ଗଳ୍ପ, କବିତା, ଗୀତିକବିତା, ପ୍ରଜାତନ୍ତ୍ର, ଚଳଚ୍ଚିତ୍ର ଜଗତ, ସୁଲେଖା, ବର୍ତ୍ତିକା, ନବପ୍ରଦୀପ, ବିଭାବନା, ଏତଲା, ଜନସୁଧା, ଶ୍ୱେତପତ୍ର, ନାରୀ ସୁରକ୍ଷା, ମନସ୍ୱିନୀ, ଶବ୍ଦସମୁଦ୍ର, ଜୁବୁଲି, ଶୁଆଶାରୀ, ଚୟନିକା, ଆଶ୍ରମଜ୍ୟୋତି, ଉଦୟଭାନୁ, ଅନନ୍ତନିର୍ଝର, କଥା, ଗୀତି ଗଙ୍ଗୋତ୍ରୀ ଆଦି ପତ୍ରପତ୍ରିକା ତଥା ରାଜ୍ୟସ୍ତରୀୟ ସଂକଳନମାନଙ୍କରେ ପ୍ରକାଶିତ ଏବଂ ପାଠକ ପାଠିକାଙ୍କ ଦ୍ୱାରା ସମାଦୃତ । କଲିକତାରୁ ପ୍ରକାଶିତ ଓଡ଼ିଆ ପତ୍ରିକା 'ଅଭିଯାନ'ର ଜଣେ ନିୟମିତ ଲେଖିକା । ୧୯୮୯ ମସିହାରୁ ସେ ଆକାଶବାଣୀ କଟକ କେନ୍ଦ୍ରର ଜଣେ ସ୍ୱୀକୃତିପ୍ରାପ୍ତ ଗୀତିକାର ଓ ନାଟ୍ୟକାର ।

**ସମ୍ମାନ ଓ ସ୍ୱୀକୃତି :** ନୟାଗଡ଼ର ପ୍ରଜ୍ଞା ଶିଶୁ କିଶୋର ସାହିତ୍ୟ ସଂସଦ, ପୁରୀର ସୁଲେଖା, ଯାଜପୁରର ସାହିତ୍ୟ ବର୍ତ୍ତିକା, କଟକର ଉଦୟଭାନୁ ସାହିତ୍ୟ ସଂସଦ, ରାଜ୍ୟ କଳା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ ତରଫରୁ ସେ ସମ୍ବର୍ଦ୍ଧିତା ହୋଇଛନ୍ତି ।

ବର୍ତ୍ତମାନ ସେ ଉଦୟଭାନୁ ସାହିତ୍ୟ ସଂସଦ, ଓଡ଼ିଆ ଗୀତିକବି ସମାଜ, ଓଡ଼ିଶା ଲେଖିକା ସଂସଦ, ଉତ୍କଳ ସାହିତ୍ୟ ସମାଜ, ଶିଶୁ ସାହିତ୍ୟ ଲେଖକ ସମ୍ମେଳନ, କଟକ, ଅନନ୍ତ ନିର୍ଝରର ଆଜୀବନ ସଦସ୍ୟା ରୂପେ କାର୍ଯ୍ୟରତା । 'ଅହଲ୍ୟା' କ୍ଷୁଦ୍ରଗଳ୍ପ ସଂକଳନଟି ଲେଖିକାଙ୍କର ଦ୍ୱିତୀୟ ଅର୍ଘ୍ୟ ।

-ପ୍ରକାଶକ